# FOLK TALES OF ORISSA

# କଥାଲହରୀ

ବା

## ଉତ୍କଳ କାହାଣୀ ସଂଗ୍ରହ ।

ଶ୍ରୀ ସଦବାନନ୍ଦ ଦାସ ବି, ଏ, ଙ୍କ ଦ୍ୱାରା

ପ୍ରକାଶିତ ।

୧ମ ସଂସ୍କରଣ

ପ୍ରାପ୍ତିସ୍ଥାନ :-

ଶ୍ରୀ ରାଧାରମଣ-ପୁସ୍ତକାଳୟ

ବାଲୁବଜାର, କଟକ ।

ପୋ: ଚାନ୍ଦିନୀଚୌକ ।

ମୂଲ୍ୟ ୫° ।୶/ ମାତ୍ର ।

# FOLK TALES OF ORISSA.

# କଥାଲହରୀ

ବା

## ଉତ୍କଳକାହାଣୀ ସଂଗ୍ରହ ।

ଶ୍ରୀ ରାଘବାନନ୍ଦ ଦାସ ବି, ଏ, ଙ୍କ ଦ୍ୱାରା ପ୍ରକାଶିତ ।

ଷଷ୍ଠ ସଂସ୍କରଣ ।

Printed by H. M. Dutta,
at the Dutta Press,
Cuttack.
1927

ମୂଲ୍ୟ ହେ ୧ ୷ ମାତ୍ର ।

# ଉତ୍ସର୍ଗ ପତ୍ର ।

ଏହି କ୍ଷୁଦ୍ର ପୁସ୍ତକଖଣ୍ଡି କୌତୁହଳପ୍ରିୟ

ସୁକୁମାରମତି ଉତ୍କଳୀୟ

ବାଳକ ବାଳିକା-

ମାନଙ୍କ ନାମରେ

ପ୍ରକାଶକଙ୍କ ଦ୍ୱାରା

ଉତ୍ସର୍ଗୀକୃତ

ହେଲା ।

# ଭୂମିକା ।

ଏବେ ଦିନରେ ଅବହମାନକାଳ ଉତ୍କଳର ପୁରସ୍ତ୍ରୀମାନଙ୍କର ମୁଖେ ମୁଖେ ଶ୍ରୂୟମାଣ, ବାଳକବାଳିକା ସମ୍ପ୍ରଦାୟର ଚିତ୍ତରଞ୍ଜନ, ଶରକୌତୁକମୟ, ଅଦ୍ଭୁତ ମଧୁର କରୁଣ ହାସ୍ୟାଦି ରସବଳାପରେ ନିତ୍ୟ ସରସ, ଓଡ଼ିଆମାନଙ୍କର କାହାଣୀ ସାହିତ୍ୟକୁ ଲିପିଶିଳ୍ପର ଅଙ୍ଗୀଭୂତ କରି ପ୍ରକାଶ କରିବାର ଉପକ୍ରମ ହେଲା । ଜଣେ କୃତବିଦ୍ୟ ଯୁବକ ଅଳ୍ପଦିନ ହେଲା 'ଉତ୍କଳର କାହାଣୀ' ନାମରେ ଖଣ୍ଡିଏ କ୍ଷୁଦ୍ର ପୁସ୍ତକ ପ୍ରକାଶ କରିଅଛନ୍ତି । ଏବେ ପୁଣି ଜଣେ କରଣ ମହିଳାଙ୍କର ଲିଖିତ 'କଥାଲହରୀ' ବା ଉତ୍କଳ କାହାଣ ସଂଗ୍ରହର ପ୍ରଥମଭାଗ ପ୍ରକାଶିତ ହେଲା । ପ୍ରକାଶକ ମହାଶୟ ମୋତେ ଶିକ୍ଷିତ ମହିଳାଙ୍କର ହସ୍ତଲିଖିତ ଅନେକ ଗୁଡ଼ିଏ କାହାଣୀର ପାଣ୍ଡୁଲେଖ୍ୟ ଦେଖିବାକୁ ଦେଇଥିଲେ । ମୁଁ ଲେଖିକାଙ୍କର ଅକୃତ୍ରିମ ଲିପିମାଧୁର୍ଯ୍ୟ ଉପଲବ୍ଧି କରି ପ୍ରକାଶକ ମହାଶୟଙ୍କର ତାହା ପ୍ରକାଶ କରିବାର ଇଚ୍ଛାକୁ ସମର୍ଥନ କରିଥିଲି । ବର୍ତ୍ତମାନ ସେଥିର ପ୍ରଥମ ଖଣ୍ଡ ମୁଦ୍ରିତ ହେବାର ଦେଖି ଅତ୍ୟନ୍ତ ଆନନ୍ଦିତ ହୋଇଅଛି । ପ୍ରକାଶକ ମହାଶୟ ପୁସ୍ତକକୁ ସର୍ବାଙ୍ଗସୁନ୍ଦର କରିବାପାଇଁ ଯଥାସାଧ୍ୟ ଯତ୍ନ କରିଅଛନ୍ତି ।

ବର୍ତ୍ତମାନ ଓଡ଼ିଆରେ ଯେଉଁ ଗଦ୍ୟ ରଚନା ପ୍ରଣାଳୀ ଦେଖାଯାଏ ତାହା ନିତାନ୍ତ ଆଧୁନିକ ଏବଂ ବୈଦେଶିକ ସାହିତ୍ୟର ପ୍ରଭାବ ଯୋଗୁଁ ବହୁପରିମାଣରେ କୃତ୍ରିମଭାବାପନ୍ନ, କିନ୍ତୁ ଏହି କାହାଣୀମାନଙ୍କରେ ଯେଉଁ ଭାଷାଭଙ୍ଗୀ ବା ବାକ୍ୟରଚନା ପ୍ରଣାଳୀ

ଲକ୍ଷିତ ହେବ, ତାହା ଚରରକ୍ଷଣଶୀଳା ନାରୀମାନଙ୍କର ମୁଖ-ନିଃସୃତ ଉତ୍କଳ ଭାଷାର ସ୍ୱାଭାବିକ ସ୍ରୋତ। ତାହାର ଅପୂର୍ବ ସୁଲଭ ଅକୃତ୍ରିମ ମୁକ୍ତ ମାଧୁର୍ଯ୍ୟର ମୋହିନୀ ଶକ୍ତି, କେତେକ ପଣ୍ଡିତମ୍ମନ୍ୟ ଉତ୍କଟ ରୁଚିଗ୍ରସ୍ତ ଲୋକଙ୍କ ଛଡ଼ା, ଅଉ କିଏ ଅସ୍ୱୀକାର କରିବ ?

କେବଳ ଶିଶୁମାନଙ୍କ ଚିତ୍ତରଞ୍ଜନାର୍ଥ କାହାଣୀପୁସ୍ତକ ପ୍ରକାଶିତ ହୋଇଥିଲେହେଁ, ତାହା ବୟସ୍କମାନଙ୍କର ଅବଜ୍ଞେୟ ବା ଉପେକ୍ଷଣୀୟ ନୁହେଁ। ତତ୍ତ୍ୱାନୁସନ୍ଧାୟୀମାନେ ସେଥିର ଭାଷା ମଧ୍ୟରୁ ଉତ୍କଳ ଭାଷାସମ୍ବନ୍ଧୀୟ ତତ୍ତ୍ୱ, ସେଥିରେ ବର୍ଣ୍ଣିତ ଘଟଣାମାନଙ୍କରୁ ପ୍ରାଚୀନ ରୀତିନୀତି-ବିଶ୍ୱାସ-ବିଷୟକ ତଥ୍ୟ ଏବଂ ଅନ୍ୟ ନାନାବିଧ ସତ୍ୟ ମଧ୍ୟ ଆବିଷ୍କାର କରିପାରନ୍ତି। ଏହି ଗ୍ରାମ୍ୟ ଗଳ୍ପ-ସାହିତ୍ୟସଙ୍ଗରେ ଅପର ଦେଶରେ ଅନ୍ୟ ଭାଷାରେ ପ୍ରଚଳିତ ଗଳ୍ପ-ସାହିତ୍ୟର ତୁଳନା କରି ସୌସାଦୃଶ୍ୟ ଓ ବୈଷାଦୃଶ୍ୟର ହେତୁ ନିର୍ଦ୍ଦେଶ-ପୂର୍ବକ ନାନା ପ୍ରକୃତତତ୍ତ୍ୱ ମଧ୍ୟ ଆବିଷ୍କୃତ ହୋଇପାରେ। ଏପରି ଅବସ୍ଥାରେ ଯେଉଁମାନେ ପ୍ରାଚୀନ ଗ୍ରାମ୍ୟ ସାହିତ୍ୟକୁ ଅବିକୃତ ଭାବରେ ସଂରକ୍ଷଣ କରିବାକୁ ଯତ୍ନ କରୁଅଛନ୍ତି ସେମାନେ ସର୍ବତୋଭାବରେ ପ୍ରଶଂସାର୍ହ। ମୋର ସମ୍ପୂର୍ଣ୍ଣ ଆଶା ଯେ ପ୍ରକାଶକ ମହାଶୟଙ୍କର ପ୍ରୟାସ ସର୍ବତୋଭାବେ ସଫଳ ହେବ।

ଶ୍ରୀ ମଧୁସୂଦନ ରାଓ।

# ବିଜ୍ଞାପନ ।

—:*:—

ଏହି କ୍ଷୁଦ୍ର ପୁସ୍ତିକା ଖଣ୍ଡିକରେ ଉତ୍କଳଦେଶୀ ଅସଂଖ୍ୟ ବାଳକ ବାଳିକା ଗଳ୍ପମଧ୍ୟରୁ ଦଶଗୋଟି ପ୍ରକାଶ କରିବାକୁ ପ୍ରୟାସୀ ହେଲୁଁ । ଏହି କାହାଣୀଗୁଡ଼ିକ ଜନୈକା କରଣମହିଳା ଦ୍ୱାରା ବର୍ଣ୍ଣିତ ଓ ଲିଖିତ ଏହିପରି କେତେଗୁଡ଼ିଏ କାହାଣୀ ସଂଗ୍ରହ କରି ପୁସ୍ତକାକାରରେ ପ୍ରକାଶ କରିବାକୁ ଆମ୍ଭେ ବହୁବର୍ଷହେଲା ହୃଦୟରେ ଇଚ୍ଛା ପୋଷଣ କରିଥିଲୁଁ, ମାତ୍ର ସୁବିଧା ଅଭାବରୁ ସେ ବାସନା ଆଜି ପର୍ଯ୍ୟନ୍ତ ପୂର୍ଣ୍ଣ ହୋଇ ପାରି ନ ଥିଲା । ବର୍ଣ୍ଣନାର ଲାଳିତ୍ୟ ଓ ଭାଷାର ମାଧୁର୍ଯ୍ୟରକ୍ଷା ନିମିତ୍ତ କାହାଣୀଗୁଡ଼ିକ ଯଥାସମ୍ଭବ ଲେଖିକାଙ୍କ ନିଜଭାଷାରେ ପ୍ରକାଶିତ ହୋଇଅଛି, କେବଳ ଅର୍ଥଗ୍ରହଣର ସୌକର୍ଯ୍ୟାର୍ଥ ଛେଦଚିହ୍ନନ୍ୟାସ ଓ ଅତ୍ୟଳ୍ପସ୍ଥାନରେ ଭାଷାପରିବର୍ତ୍ତନ ଅମ୍ଭଦ୍ୱାରା ହୋଇଅଛି । ଏହି ସଂଶୋଧନ କାର୍ଯ୍ୟରେ ଆମ୍ଭେ କଟକ ଟ୍ରେନିଂସ୍କୁଲର ହେଡ୍‌ମାଷ୍ଟର ମାନନୀୟ ଶ୍ରୀଯୁକ୍ତ ବାବୁ ମଧୁସୂଦନ ରାଓଙ୍କଠାରୁ ପ୍ରଭୂତ ସାହାଯ୍ୟ ପାଇଅଛୁ । ଏଥିନିମନ୍ତେ ତାଙ୍କଠାରେ ଆମ୍ଭେ ବିଶେଷ ଋଣୀ । ଉକ୍ତ ମହାଶୟ ମଧ୍ୟ କାହାଣୀଗୁଡ଼ିକ ଆଦ୍ୟୋପାନ୍ତ ପାଠ କରି ପୁସ୍ତିକାନ୍ତର୍ଗତ ଭୂମିକାଟି ଲେଖିଦେଇ ଆମ୍ଭଙ୍କୁ ବିଶେଷ ଉତ୍ସାହିତ କରିଅଛନ୍ତି । ଆମ୍ଭେ ଏଥିନିମନ୍ତେ ତାହାଙ୍କଠାରେ ଚିରକୃତଜ୍ଞତା ପାଶରେ ବଦ୍ଧ । ପରିଶେଷରେ ସାଧାରଣଙ୍କୁ ବକ୍ତବ୍ୟ ଏହି ଯେ ଏହି କାହାଣୀ ପୁସ୍ତିକାଖଣ୍ଡି ସେମାନଙ୍କର [illegible] ପଠନଯୋଗ୍ୟ ବିବେଚିତ ହେଲେ, ଆମ୍ଭର ଶ୍ରମ ସଫଳ ହୋଇଅଛି ବୋଲି ଜ୍ଞାନ କରିବୁଁ ।

କଲେଜଗଳି, କଟକ ।
୧୦।୧୦।୧୯୦୧

ପ୍ରକାଶକ ।

# ଷଷ୍ଠ ସଂସ୍କରଣର ବିଜ୍ଞାପନ

ପଞ୍ଚମ ସଂସ୍କରଣର କପିଗୁଡ଼ିକ ନିଃଶେଷିତ ହୋଇଯାଇଥିବାରୁ ଷଷ୍ଠ ସଂସ୍କରଣ ପ୍ରକାଶିତ ହେଲା । ଲିପି ଦୋଷଗୁଡ଼ିକ ସଂଶୋଧନ କରାଯାଇଅଛି । ପୁସ୍ତିକାଖଣ୍ଡି ପୂର୍ବବତ୍ ଆଦର ପାଇଲେ ଲେଖିକା ପ୍ରକାଶକ ଆନନ୍ଦିତ ହେବେ । ଇତି ।

ତା ୯ ରିଖ ଜୁଲାଇ ୧୯୬୭ ମସିହା ।

ପ୍ରକାଶକ ।

# ସୂଚିପତ୍ର ।

# ଉତ୍କଳ କାହାଣୀ ସଂଗ୍ରହ ।

## ପ୍ରଥମ ଭାଗ ।

### ଢଥାର ଲଥଃ ।

କଥାଟିଏ କହୁଁ   କଥାଟିଏ କହୁ ।
କିସ୍ କଥା ?   ବେଙ୍ଗୁଲି କଥା ।
କିସ୍ ବେଙ୍ଗୁଲି ?   କାଠ ବେଙ୍ଗୁଲି ।
କିସ୍ କାଠ ?   ଢେଲି ମାଠ ।
କିସ୍ ଢେଲି ?   ଘଣା ପେଲି ।
କିସ୍ ଘଣା ?   ଥଣ୍ଟୁ ଢଣା ।
କିସ୍ ଥଣ୍ଟୁ ?   କନ୍ୟାର ଥଣ୍ଟୁ ।
କିସ୍ କନ୍ୟାର ?   ବୁଢ଼ୀ ମନ୍ତ୍ରଣୀ ।
କିସ୍ ବୁଢ଼ୀ ?   ଶୁକଲ ବୁଢ଼ୀ ।
କିସ୍ ଶୁକଲ ?   ହାତୀ ଶୁକଲ ।
କିସ୍ ହାତୀ ?   ରଜାଙ୍କ ହାତୀ ।
କିସ୍ ରଜା ?   ଖଣ୍ଡ ଖଞ୍ଜା ।
କିସ୍ ଖଣ୍ଡ ?   ମିରଗ ଲଣ୍ଡ ।
କିସ୍ ମିରଗ ?   ଝାଡ଼ ମିରଗ ।
କିସ୍ ଝାଡ ?   କିଆଁ ଝାଡ ।
କିସ୍ କିଆଁ ?   କାନକୋଲି କିଆଁ ।
ଯହିଁ ଲାଗିଥାଏ ଝଟାପଟା । *

---

* କଥାଟିଏ କହିବା ପୂର୍ବରୁ ଶ୍ରୋତାମାନଙ୍କ ଚଳନ୍ତୁ ପ୍ରଶ୍ନର ଉତ୍ତରରେ ଗ୍ରାମ୍ୟବାଳକମାନେ ଏହି ଅର୍ଥହୀନ ବାକ୍ୟ ଗୁଡ଼ିକ କହିଥାନ୍ତି ।

## ସାଧବଘର ବୋହୂ କଥା ।

ଗୋଟିଏ ସାଧବଟିଏ ଯେ ତାର ସାତ ପୁଅ ସାତ ବୋହୂ । ସବା ସାନ ବୋହୂଟିକି କେହି ଦେଖି ପାରନ୍ତି ନାହିଁ । ଏକା ସ୍ୱାମୀଟି ଭଲ ଦେଖିପାରେ । ସମସ୍ତେ ସକାଳୁ ଗାଧୋଇ ପାଧୋଇ ଆସନ୍ତି, ସାନ ବୋହୂଟି ଅଧେଇ ପହରରେ ଗାଧୋଇ ଯାଏ । ଗାଧୋଇ ଆସେ, ସେଠାରେ ଠାକୁର ଥାଆନ୍ତି ନଈପାଖେ, ସାନବୋହୂ ତାଙ୍କଠାରେ ଦଣ୍ଡବତ କରେ, କହେ ଶଶୁର ହୋଇଥିବେ ଗାଁ ରାଜନ ତୁଲେ ଶାଶୁ ହୋଇଥିବେ ରାଣୀ, ଛ ଦେଢ଼ଶୁର ଛ ସାମନ୍ତ ଲୋ ଛ ଯାଆ ସାଅନ୍ତାଣୀ, ମୋ ଗିରସ୍ତ ହେବ କନକରାଜନ ମୁଁ ହେବି ପାଟରାଣୀ । ପୁଅ ହେଇଥିବ ରାଜକୁମର ଲୋ, ପୋଥି ଧରି ଗୀତ ଗାଇବ, ଦ୍ୱାରେ ଲଗାଇବ ସୁନାଠଭି ଗଛ ନଗୀ ଧରି ଫୁଲ ତୋଳିବ । ତଥ ହୋଇବ ? ତଥାଁ କହନ୍ତି ହଁ ହୋଇବ । ଏପରି ସବୁଦିନେ କହେ, ତଥାଁ କହନ୍ତି ହଁ ହୋଇବ । ହନକର ଛ ଯା ଯାକ ଶୁଣିଲେ, ଯାଇକରି ମିଛରେ ଶାଶୁ ଆଗରେ କହିଲେ, ସାନ୍ତାଣି ଶୁଣିଲଣି ତମ ସାନବୋହୂ କଣ କହୁଛି ! ଶାଶୁ କହିଲେ କଣ କହୁଛି ? କହୁଛି, ଛ ଦେଢ଼ଶୁର ଛ ମୂଲିଆ ଲୋ ଛ ଯାଆ ମୂଲିଆଣି ଶଶୁର ହୋଇବେ ଗାଁର ମଲକ, ଶାଶୁ ହେବେ ମଲକାଣୀ, ମୋ ଗିରସ୍ତ ହେବ କନକରାଜନ ମୁଁ ହେବି ପାଟରାଣୀ, ପୁଅ ହେଇଥିବ ରାଜକୁମର ଲୋ ପୋଥି ଧରି ଗୀତ ଗାଇବ, ଦ୍ୱାରେ ଲଗାଇବ ସୁନା ଠଭିଗଛ ନଗୀ ଧରି ଫୁଲ ତୋଳିବ । ସେ ପଛରେ ତଥାଁ ହୋଇବ ? ସେ ଦିଅଁଟା କହେ ହଁ ହୋଇବ । ଶାଶୁ ଶଶୁର

ସମସ୍ତେ କହୁଲେ ସାନ ବୋହୂକୁ ଘରୁ ତଡ଼ିଦିଅ । ତା ସ୍ୱାମୀ ଆଗରେ କହୁଲେ । ସ୍ୱାମୀ କହୁଲା ହଁ ତଡ଼ିଦେବ ଯେ, ରହୁଥାଅ ବୁଝିବା, ଶୁଣିବା ଲୁଚକର ସେ କଣ କହୁବ, ତେବେ ଯାଇଁ ତଡ଼ିଦେବ, ବୃଥାରେ କାହିଁକି ଯେମନ୍ତ ହେଉଚ ? ସମସ୍ତେ ଭୁନଭାନ ହୋଇ ରହୁଲେ । ତହିଁ ଆରଦିନ ସାନବୋହୂ ଗାଧୋଇ ଗଲାବେଳେ ଶାଶୂ, ଛ ଯା, ସ୍ୱା ବର ଲୁଚକରି ରହୁଲେ । ଏ ଗାଧୋଇ ଆସି ଠାକୁରଙ୍କଠାରେ ଦଣ୍ଡବତ କଲା ବେଳେ କହୁଲା, ଶଶୁର ହୋଇବେ ଗାଁ ରାଜନ ଲୋ, ଏହୁପରି ସବୁଦିନେ ଯେମନ୍ତ କହେ ସେମନ୍ତ କହୁଲା । ଦିଅଁ କହୁଲେ ହଁ ହୋଇବ । ସାନବୋହୂ ଘରକୁ ଆସିଲା, ଏ ସବୁ ଘରକୁ ଆସିଲେ ଏହାର ବର କହୁଲା, ସେତ ଏହା କହୁଲା, ତେମେ ସବୁ କେମନ୍ତଁ ଅନ୍ୟ ପ୍ରକାର କହୁଲ ? ଆଜ ଏହା କହୁଲ, ଆଉ କେଉଦିନ ଆଉ କଣ କହୁବ । ଦିଅ ତାକୁ ବାହାର କରଦିଅ, ମତେ ବାହାର କରଦିଅ, ଆମେ ଯାଉଛୁଁ । ଏହା କହୁ ସ୍ୱାମୀ ସ୍ତ୍ରୀ ଦୁହେଁଯାକ ଗଲେ ଘରୁ ବାହାର । ଯାଇଁ ଆଉ ଗୋଟିଏ ରାଇଜରେ ଗୋଟାଏ ବରଗଛ ମୂଳରେ ବସିଚନ୍ତି, ସେ ରାଇଜର ରଜା ମରି ଯାଇଥାଏ ଯେ ହାତୀ ମୁଣ୍ଡରେ କଲଶ ଦିଆ ହୋଇଥାଏ, ଯାହା ଉପରେ ହାତୀ କଲଶ ଢାଳିବ ସେ ରଜା ହେବ । ହାତୀ କଲଶ ଘେନ ବୁଲୁଥାଏ, ଦେଖିଲା ଏ ଦୁହେଁ ବରଗଛମୂଳେ ବସିଚନ୍ତି, ସ୍ୱାମୀଙ୍କ ଉପରେ କଲଶ ଢାଳିଦେଲା, ସ୍ୱାମୀଙ୍କୁ ଉପରେ ବସାଇଲା, ନେଇ ସେ ରାଇଜରେ ରଜା କରାଇଲା । ଏ ରଜା ହେଲା, ଭାରିଯା ପାଟରାଣୀ ହେଲା, ରହୁଲେ । ପୁଅ ଜନ୍ମ ହେଲା, ପୁଅର ନା ଦେଲେ, ଖଣ୍ଡୁଅଁ, କାନବଳା ହେଲା । ପୁଅ ବଢ଼ିଲା, ଦୁଆରେ ଗୋଟାଏ ଝାଉଁଗଛ ଲଗାଇ ଥାଏ, ପୁଅ ହାତରେ ଖଣ୍ଡିଏ ଅଙ୍କୁଡ଼ୀ ଦେଇଥାଏ, ପୁଅ ଫୁଲ ତୋଳୁଥାଏ, ଗୀତ ବୋଲୁଥାଏ

ଯୋଗସ୍ତ ଖୋଲା ଲଗିଥାଏ, ଏହିପରି ଭଣ୍ଡ କାରଖାନା ଲଗିଛି ତାହାଁ । ଏ ସାଧବଘର ବସ୍ତକର ମାଡି ଝାଇଗଲାପରେ ଚଳେ ପେଟକୁ ଦାନା ଅଣ୍ଟିଲା ନାହିଁ, ଚୋରି କି କଳା ମିଳିଲା ନାହିଁ । ଶୁଣି ପାଇଲେ କୋଉ ଦେଶରୁ ଜଣେ ନୂଆ ରଜା ଆସିଛି ଯେ ପୋଷସ୍ତ ଖୋଲାଉଛି, କୂଅ ଖୋଲାଉଛି, ସବୁ ଦାନ ଧର୍ମ କରୁଛି । ଏମାନେ କହିଲେ ଆମର ଗୃହ ମାଣ୍ଟ ହୋଇବା ଯେ ମୂଲ ଆଣି ପେଟ ପୋଷିବା । ଛଅ ବୋହୂଯାକ, ଶାଶୁ ଶଶୁର; ଛ ପୁଏ, ସମସ୍ତେ ଚଳେ, ଯାଇ ପୋଷସ୍ତ ଉପରେ ବସିଲେ । ଯେ କଡ଼ାକଥ (୧) ପକାଉଥିଲା ତାକୁ କହିଲେ ଯା ତମ ସାଆନ୍ତାଣୀଙ୍କି କହିବ ସାତଜଣ ମରଦ ସାତଜଣ ମାଇପେ ଆସିଛନ୍ତି ତାଙ୍କୁ ମାଣ୍ଟ ବୁହାଇବେ ? ଜଣେ ଗୃହରଥ ଯାଇ ରଜାଙ୍କୁ କହିଲା, ରଜା କହିଲେ ଯା ରାଣୀଙ୍କ ପଚାରିବୁ । ରାଣୀକି ଅସି ସେଇଯା କହିଲା, ରାଣୀ କହିଲେ ହଉ ସେ ମାଣ୍ଟ ବୋହନ୍ତୁ । ଏ ଜାଣିପାରିଲା, ଉପର ମହଲାକୁ ଚଢ଼ିଗଲା, ଦେଖିକରି ଅସିଲା; କହି ପଠାଇଲା ଯୋଉ ବୁଢ଼ା ବୁଢ଼ୀ ଦୋଛି, ତାଙ୍କୁ ଅଳପ ମାଟି ଦେବ, ଯୋଉ ଛଅଟା ମରଦ, ଛଅଟା ମାଇପେ, ତାଙ୍କ ମୁଣ୍ଡରେ ଖୁବ ମଜଭୁତ୍ ବୋଝେ ଲେଖାଁ ଲଦଦେବ । ଏମାନେ ମାଟି ବୋହିଲେ; ଖୁବ ବୋଝେ ଲେଖାଁ ମାଟି ନଅନ୍ତି, କଉଡ଼ି କଡ଼ାଏ ପାନ୍ତି । ଏ କଣକଲା ଏଣେ ପହ୍ଲାର ପାଖକୁ କହି ପଠାଇଲା, ଆଜ ବେଣୀକର ଟ୍ରଖାଇ ବାସ କରିବ, ଉଲ୍ଟ କରି ଡରକାର କରବ, ସବୁ ଥଣିବ ଅଡ଼େ ଦେଇଯିବ । ପହ୍ଲାର ଖେଖାଇବାସ କରି ରାଣୀଙ୍କ ଉଆ-

---

୧ । ଦୂରତା ଅନୁସାରେ ବୋଝେ ମାଟି ନେଇ ନିର୍ଦ୍ଦିଷ୍ଟ ସ୍ଥାନରେ ପକାଇଲେ କଡ଼ାଏ ବା ଦୁଇକଡ଼ା ବା ଅଧିକ ଦେବା ନିୟମକୁ କଡ଼ାକଥା କହନ୍ତି ।

ଘରେ ଦେଇ ଆସିଲା । ଏ ଚାକରକୁ କହିଲା ସେ ଯୋଉ ସାତ ଜଣ ମରଦ ସାତଜଣ ମାଇପେ ଆସିଛନ୍ତି ତାଙ୍କୁ, ତାଙ୍କ ଅଣ; ଚାକର ଛକି ଅଣିଲା । ଏ କଣକଲା, ସାତଜଣ ଭଣ୍ଡାରୁ, ସାତ ଗିନା ତେଲ, ସାତ ଯୋଡ଼ା ପାଟଯୋଡ଼ ଯ୍ୟାକୁ ସବୁ ସାତ ମରଦଙ୍କପାଇଁ ପଠାଇଲା; ସାତ ମାଇପିଙ୍କ ପାଇଁ ସାତ କାଚୁଆ ହଳଦ, ସାତ ଗିନା ତେଲ, ସାତୁଟା ଫୋଇଲା, ସାତଖଣ୍ଡ ପାଟଶାଢ଼ୀ ପଠାଇଦେଲା । ସେ ସବୁ ଲଗେଇ ପଗେଇ ହୋଇ ଗାଧୋଇ ପାଧୋଇ ଆସିଲେ, ଆଉ ଏ ସାନବୋହୂ ସାନ ପୁଅ ବୋଲି ଜାଣନ୍ତି ନାହିଁ, ମନେ ମନେ ହେଉ-ଥାନ୍ତି ସମସ୍ତେ ଏ ଆମକୁ ଏପରି ସବୁ ଖାତିର କରୁଚି, ଏ କଣ ଆମକୁ ଆଉ ମାରି ପାରିବ କି ? ଏପରି ମନରେ ପାଞ୍ଚି ହେଉଥାନ୍ତି । ଯୋଉଠୁଁ ଏମାନେ ଗାଧୋଇ ଆସିଲେ ଦେଖିଲା, ଦିଇଟା ଘରେ ଠା ପିଢ଼ା କଲା, ଶଶୁର ଆଉ ଛ ଦେଢଶୁରଙ୍କୁ ଗୋଟାଏ ଘରେ ଦେଲା, ଶାଶୁ ଆଉ ଛ ଯାଙ୍କୁ ଆଉ ଗୋଟାଏ ଘରେ ଦେଲା । ସମସ୍ତଙ୍କୁ ଲୁଣ ଦେଇଥାଏ, ଆଉ ଶାଶୁ ଶଶୁରଙ୍କୁ ଲୁଣ ଦେଇ ନଥାଏ ଯେତେଥର ଅସୁଥାଏ ପରଷିବାକୁ, ସେତେଥର ଭାତ ଭଲରେ ଖଣ୍ଡେ ଲେଖାଁ ପାଞ୍ଚ ପିଢ଼ୁ ଅସୁଥାଏ । ଏମାନେ ମନେ କରୁଥାନ୍ତି ଏହା ଘରେ ଏମନ୍ତ କେତେ ବୋହୂ ଅଛନ୍ତି କି ? ଏ ସମସ୍ତଙ୍କୁ ଆଗରେ ପଛରେ ଦେଇ ସାରିଲା, ଫେର କହିଲା ଆଉ କଣ ଦେବି ? ଶାଶୁ ଶଶୁର ଆଉ ଏତେକଥା ଜାଣିଚନ୍ତି ? କହିଲେ ଲୁଣ ଦୋଟି ଦେଲ । ଏ ସେତିକିବେଳେ କହିଲା, କେତେ ଦେବି ଲୁଣ, କି ଖାଇବ ଏହି ଶାଶୁ ଶଶୁରଙ୍କ ଗୁଣ । ଏହା ଯୋଉଠୁ କହିଲା, ସମସ୍ତେ ଜାଣି ପାରିଲେ, କାନ୍ଦି ଉଠିଲେ; କହିଲେ ଯାହା କହିଥିଲା ସେଇଆ ହେଲା । ଆମେ ଯାହା କହୁଥିଲୁ ଆମକୁବି ସେଇଆ ଫଳିଲା । ଏହିପରି କୁହା କୁହି ହେଲେ, ସେଠାରେ ମାସେ ଦିମାସେ ରହିଲେ । ତେଣେ ଅଲଗା ଉଆସ ତୋଳା ହେଲା, ସେମାନେ ସେଥିରେ ରହିଲେ,

ଘରଦୁଆର ହଳେ, ମୁଁ ଗଲାରୁ କଥା କହୁଲେ ନାହିଁ । * ମୋ କଥାଟି ସରିଲା, ଫୁଲଗଛଟି ମରିଲା ।

'ହଇରେ ଫୁଲଗଛ' କାହିଁକି ମରିଲୁ ? ମତେ ଗାଈ ଖାଇଗଲା ।

ହଇରେ ଗାଈ କାହିଁକି ଖାଇଲୁ ? ମତେ ଗଉଡ଼ ଜଗିଲା ନାହିଁ ।

ହଇରେ ଗଉଡ଼ କାହିଁକି ଜଗିଲୁ ନାହିଁ ? ମତେ ବଡ଼ବୋହୂ ଭାତ ଦେଲା ନାହିଁ ।

ହଇଲୋ ବଡ଼ବୋହୂ କାହିଁକି ଭାତ ଦେଲୁ ନାହିଁ ? ମତେ ପୁଅ ଛାଡ଼ିଲା ନାହିଁ ।

ହଇରେ ପୁଅ କାହିଁକି ଛାଡ଼ିଲୁ ନାହିଁ ? ମତେ ଧୂଳିଆ ଯନ୍ଦା କାମୁଡ଼ିଲା ।

ହଇରେ ଧୂଳିଆଯନ୍ଦା କାହିଁକି କାମୁଡ଼ିଲୁ ? ମୁଁ ତଳେ ଥାଏ କଅଁଳ 'ମାଉଁସ ପାଇଲେ କୁଟ୍ କରି ଖାଏ' ।

## ଶ୍ୱେତ ବସନ୍ତ କଥା ।

ଗୋଟିଏ ମାଳିଟିଏ, ସେ ଭାରି ଦୁଃଖୀଟିଏ । ଏ ମାଳୀର ଦୁଇ ପୁଅ, ବଡପୁଅ ନା ଶ୍ୱେତ, ସାନ ପୁଅ ନା ବସନ୍ତ । ଦୁଇ ଭାଇ ଏହିପରି

---

* ପ୍ରତ୍ୟେକ କାହାଣୀର ଉପସଂହାରରେ କଥକମାନେ ଏହି କଥାଗୁଡ଼ିକ କହିଥାନ୍ତି କେହି ବା କେବଳ ନିମ୍ନଲିଖିତ କେତୋଟି ଶବ୍ଦ ଉଚ୍ଚାରଣ କରି କଳ୍ପିତ ଉପସଂହାର କରନ୍ତି ।—

"ମୋ କଥାଟି ଏତିକି ଫୁଲ ଫୁଟିଗଲା କଥା କେତକୀ ।"

ଦୁଃଖ ପାଇ ରହୁଥାନ୍ତି, ମାଲ ତା ଭରସା ଦୁହେଁଯାକ ମରଗଲେ ଅଉତ କେହୁ ଥଣ୍ଡା ନାହିଁ, ଏ ଦହେଁ ଦାଦିଘରେ କାମ ଦାମ କର ଚଳୁଥାନ୍ତି । ଦିନେ ଦାଦିର ସୁନା ମୁଦି ଚୋରଗଲା, ଦାଦି ଏ ଦୁହିଁକି ଧରଲା । ଏ ଦୁହେଁ କହଲେ ଆମେ ନେଇ ନାହୁଁ । ଦାଦି ଏମାନଙ୍କ କଥା ସତ ନ କର ଏ ଦୁହିଁକି ତଡ଼ଦେଲା । ଏ ଦୁହେଁ କାନ୍ଦ ବୋବେଇ ଘରୁ ବାହାର ଗଲେ, ଯାଇଁ ଗୋଟାଏ ବନସ୍ତରେ ପହଞ୍ଚଲେ । ସେ ବନସ୍ତରେ ଗୋଟିଏ ଶୁଆଟିଏ ଗୋଟିଏ ସାରୀଟିଏ ଗଛରେ ବସି କଥା ହେଉଚନ୍ତି—ଶୁଆ କହୁଚ ମତେ ଯେ ଧରବ ସେ ରଜା ହେବ, ସାରୀ କହୁଚି ମତେ ଯେ ଧରବ ସେ ଚାଲିଲେ ପଦ୍ମ ଫୁଟିବ, କାନ୍ଦିଲେ ମୁକ୍ତା ଝଡ଼ିବ । ଏହିପର କୁହାକୁହି ହେଉଥାନ୍ତି; ଏ ଦୁଇ ଭାଇ ଶୁଣିଲେ ଧରବାକୁ ଗଲେ । ଶ୍ୱେତ ଧରଲା ଶୁଆଟିକ, ବସନ୍ତ ଧରଲା ସାରୀକ ; ଧର କର ଅଣି ଭୋକ ବଳରେ ଦୁହେଁ ଦୋଟିଯାକ ଖାଇ ଦେଲେ । ଖାଇ ସାର ବସନ୍ତ କହଲା ମୋତେ ଶୋଷ କରୁଛି; ପାଣି କେଉଁଠି ମିଳବ ? ଶ୍ୱେତ କହଲା, ତୁ ଏଇଠି ବସଥା ମୁଁ ପାଣି ଅଣେ; ଏହା କହି ପାଣି ଖୋଜବାକୁ ଗଲା । ସେ ଗାଉଁଥକୁ ଗଲେ ହୋଇଚି, ସେ ଦେଶର ରଜା ମର ଯାଇଛୁ ଯେ ହାତୀ କଳସ ଘେନ ବୁଲୁଚ, ଯାହାକୁ ମନ କରବ ତା ଉପରେ କଳଶ ଢାଳ ଦେବ; ଶ୍ୱେତକୁ ଦେଖି ତା ଉପରେ କଳଶ ଢାଳ ଦେଲା । ପାତ୍ର ମନ୍ତ୍ରୀ ସମସ୍ତେ ଶ୍ୱେତକୁ ହାତୀରେ ବସାଇ ନେଇ ଗଲେ; ରାଜା କଲେ । ଶ୍ୱେତ ରଜା ହୋଇ ସବୁ ବୁଝିଲା, ମାତ୍ର ବସନ୍ତ ପାଇଁ ଭାବ ହେଉଥାଏ ମନେ ମନେ । ଏଣେ ବସନ୍ତ ଭାଇକ ଅନାଇ ଅନାଇ ଆଉ ଭାଇ ଆସିଲା ନାହିଁ ଯୋଉଠୁ; କାନ୍ଦ କାନ୍ଦ ବନସ୍ତଭତରକୁ ବାହାରଲା । ବାଟରେ କାନ୍ଦିଲାକ୍ଷଣି ମୁକ୍ତା ଝଡ଼ୁଥାଏ; ପାଦ ପକାଇଲାରୁ ପଦ୍ମ ଫୁଟୁଥାଏ ଏହିପର ବାଟଯାକ ହୋଇ ଯାଉଥାଏ । ବସନ୍ତ ମୁକ୍ତାତକ ଗୋଟାଇ ରଖୁଥାଏ, ବାଟ ଚାଲୁଥାଏ । ଭାଇକ ତ ପାଇଲା ନାହିଁ

ବୁଲି୨ ସେ ଯୋଉ ଗାଁରେ ରଜା ହୋଇଛୁ ସେହି ଗାଁରେ ଗୋଟିଏ କୁମ୍ଭାର ଘରେ ରହିଲା । ଲୁଗାପଟା ତ ନ ଥାଏ, ଖଣ୍ଡିଏ ଚିରାଲୁଗାରେ ସେ ମୁକ୍ତାଗୁଡ଼ିକ ବାନ୍ଧି କୁମ୍ଭାର ଘରେ ଗଣ୍ଡିଏ୨ ଖାଇ ଚାମଦାମ କରୁଥାଏ । ଏହିପରି କେତେଦିନ ଗଲା, ରାଜା ଚୋର ଜଗିବାକୁ ମନୁଷ ଦରକାର ହେଲେ, ଗ୍ରାମରେ ଯେତେ ଘର ସମସ୍ତଙ୍କ ଘରୁ ଜଣେ୨ ଜଗିବାକୁ ଗଲେ । କୁମ୍ଭାରଘରୁ ବସନ୍ତ ଚୋର ଜଗିବାକୁ ଗଲା । ଦିନେ ବସନ୍ତ ନ ଥିଲାବେଳେ କୁମ୍ଭାର ତାର ଲୁଗାପଟା ଫିଟାଇ ଦେଖେ ଯେ, ମୁକ୍ତା ସବୁ ଜକ ଜକ ହଉଚି । ମୁକ୍ତାଗୁଡ଼ିକ ସେଥିରୁ ନେଇଗଲା, ଭାତଗୁଣ୍ଡିଏ ବାନ୍ଧି ଦେଲା । ବସନ୍ତ ଆସି ଦେଖେ ଯେ ମୁକ୍ତାଗୁଡ଼ିକ ନାହିଁ । କୁମ୍ଭାରକୁ ପଚାରିଲାରୁ କୁମ୍ଭାର ନାହିଁକରି ମାରି ଗୋଡ଼ାଇଲା । ବସନ୍ତ ଆଉ କଣ କରିବ, ତୁନି ହୋଇ ରହିଲା । ନିତି ରାତିକି ବସନ୍ତ ଚୋର ଜଗିବାକୁ ଯାଏ, ସେଠିଇ ସମସ୍ତେ ସମସ୍ତଙ୍କ ଦୁଃଖ ସୁଖ କଥାବାର୍ତ୍ତା ହୁଅନ୍ତି । ଦିନେ କଥା ପଡ଼ନ୍ତେ ବସନ୍ତର କଥା ସମସ୍ତେ ପଚାରିଲେ । ବସନ୍ତ କହିଲା ଦୁଃଖ କହିବି କି ସୁଖ କହିବି; ଯାହା ଅଙ୍ଗେ ନିଭେଇଚି ତାହା କହିବି । ତା ଜୀବନର ସବୁ ଘଟଣା କହିଗଲା । ଯେମନ୍ତ ସେ ଦୁଇଭାଇ ଥିଲେ ବାପ ମା କେମନ୍ତ ମରିଯିବାରୁ ଦାଦି ଘରେ ଥିଲେ, ଦାଦିର ମୁଦି ଚୋରିଯିବାରୁ ଦାଦି ଯେମନ୍ତ ତଡ଼ି ଦେଲା, ବନସ୍ତରେ ଶୁଆ ସାରି ଯାହା୨ କହିଥିଲେ; ଶ୍ୱେତ ପାଣି ପାଇଁ ଯାଇ ଯେମନ୍ତ କୁଆଡ଼େ ରହିଲା, ଏ କୁମ୍ଭାରଘରେ ରହିଥିଲା; ଏହାର ମୁକ୍ତାଗୁଡ଼ିକ ଯେମନ୍ତ କୁମ୍ଭାର ନେଇଗଲା; ସବୁ କଥା ସେମାନଙ୍କୁ କହିଗଲା । ଏମାନେ ଶୁଣି ବଡ଼ ବ୍ୟସ୍ତ ହେଲେ, ଯାଇ ରାଜାଙ୍କୁ ସବୁ କଥା କହିଲେ । ରାଜା ବସନ୍ତକୁ କୁମ୍ଭାର ଘରୁ ଡକାଇ ଆଣିଲେ, ତାକୁ ତାର ପରିଚୟ ପଚାରିଲେ । ବସନ୍ତ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ସବୁ କହିଗଲା । ଶ୍ୱେତ ବସନ୍ତ ଦିହେଁ ଯାକ ଚିହ୍ନାଚିହ୍ନି

ହେଲେ, କେତେ କାନ୍ଦିଲେ । ଶେଷ ବସନ୍ତକୁ ଖୁଅର କରାଇ ଅଣିଲା । ପଞ୍ଚତୀର୍ଥପାଣିରେ ଗାଧୋଇଦେଇ ଭଲ ଲୁଗାପଟା ପିନ୍ଧାଇଲା । ପାତ୍ର ମନ୍ତ୍ରିଙ୍କି ଡକାଇ ତାକୁ ଯୁବରାଜ କରିବାର ହୁକୁମ ହେଲା । ମନ୍ତ୍ରୀ ହେଉଚି । ଛତ୍ର ଚାମର ଧରିଲେ, ସିଂହାସନ ଉପରେ ବସନ୍ତ ବସିଲା, ହାତୀ ସୁବର୍ଣ୍ଣ କଳସ ଢାଳି ତାକୁ ଅଭିଷେକ କଲା । ବସନ୍ତ ଯୁବରାଜ ହେଲା; ଶେଷ ବସନ୍ତ ଦୁହେଁ ରାଜ ପରଜାଙ୍କୁ ବଡ଼ସୁଖରେ ପାଳିଲେ । ବାହାଚୋରି ହୋଇ ସୁଖରେ ରହିଲେ । ମୁଁ ଗଲାକୁ କଥା ନ କହିଲେ । ମୋ କଥାଟି ସରିଲା, ଇତ୍ୟାଦି ।

## ଚମ୍ପୀଚୋରୀ ଦାସୀର କଥା ।

ଗୋଟିଏ ରଜାଟିଏ, ତାର ଗୋଟିଏ ଚମ୍ପାଦେଈ ନାମରେ ଝିଅ, ଝିଅଟି ବଡ଼ ହେବାରୁ ତା ପାଇଁ ବରଘର ଲାଗିଲା । ବରର ନାମ ଷୋଳଖିଣ୍ଡା ମହାରାଜା । ରଜା ଝିଅତ; ସେ କଣ ଜାଣନ୍ତି । ଝିଅ ମନେ ମନେ କଲା ସେ ବରର ଷୋଳଟା ଶିଙ୍ଘ । ମନେ ମନେ ବଡ଼ ଭାବନାରେ ଥାଏ, ବିଭାଘର ଦିନ ବର ଅସି ଅଧବାଟରେ ହେଲାଣି, ଚମ୍ପାଦେଈ ମନ ବଡ଼ ଛଟପଟ ହେଲା । ତାର ଗୋଟିଏ ସମ-ବୟସ୍କ ଦାସୀ ଥିଲା, ତାର ନାମ ଚମ୍ପୀଚୋରୀ, ତାକୁ କହିଲା ଯା ତୁ ବରକୁ ଦେଖି ଆସିବୁ ତା ଶିଙ୍ଘମାନ କିପରି ? ଚମ୍ପୀଚୋରୀ ବରକୁ ଦେଖି ଆସିଲା; ନିକଟରେ ଆସି କହିଲା ଶିଙ୍ଘ ଗୁଡ଼ାକ କି ଅବ-ର୍ଜିଆ ହେଉଛି, କେଉଁ ଶିଙ୍ଘରେ କନାଧଣ୍ଡ ଗୁଣ୍ଡିଆ

ହୋଉଚି; କେଉଁ ଶିଙ୍ଘରେ ଅଡୁଆଢାଲ ଗୁଣ୍ଡୁଅ ହୋଇଚି କେଉଁ ଶିଙ୍ଘ ନଡ଼ ନଡ଼ ହେଉଛି; ଏହିପରି କହି ଚମ୍ପାଦେଈ ମନରେ ଅଗଠଉଁ ବେଶି ଦୟା ଜାତ କରାଇଦେଲା । ଚମ୍ପାଦେଈ ଚମ୍ପୀଚୋରୀକୁ କହିଲା ମୁଁ ତାକୁ ବଭା ହେବ ନାହିଁ, ତୁ ତାକୁ ବଭା ହୋ; ମୁଁ ପଛକେ ତୋର ଦାସୀ ହୋଇ ଯିବି । ଚମ୍ପୀଚୋରୀ ଚମ୍ପାଦେଈ ସଜ୍ଜଯାକ ଲଗାଇ କନ୍ୟା ସାଜିଲା ଓ ଚମ୍ପାଦେଈ ଚମ୍ପୀଚୋରୀର ସଜ୍ଜଯାକ ଲଗାଇ ଦାସୀବେଶ ହେଲା, ବଭାଘର ହେଲା । ଚମ୍ପୀଚୋରୀ ଷୋଳଶିଙ୍ଘା ମହାରାଜାକୁ ବଭା ହେଲା, ଚମ୍ପାଦେଈ ତା ସଙ୍ଗରେ ଦାସୀହୋଇ ଗଲା । ଚମ୍ପାଦେଈ ଯେତେବେଳେ ଜାଣିପାରିଲା ଯେ ଚମ୍ପୀଚୋରୀ ତାକୁ ମିଛକହି ଅଡସନ୍ଧର ଷୋଳଶିଂଘା ରାଜାକୁ ବଭାହେଲା ତାର ମନରେ ଅତିଶୟ କଷ୍ଟ ହେଲା । ନିଜେ ତ ଏ ବାଟ କରିଚି, ଆଉ କଣ କରିବ । ତୁନି ହୋଇ ରହିଲା । ଷୋଳଶିଂଘା ରାଜାର ଆଉ କେହି ନାହାନ୍ତି; ଚମ୍ପୀଚୋରୀ ରନ୍ଧାବଢ଼ା କରେ ରାଜାକୁ ଖାଇବାକୁ ଦିଏ; ନିଜେଖାଏ ଆଉ ଚମ୍ପାଦେଈକି ଖାଇବାକୁ ଦିଏ । ଚମ୍ପାଦେଈ ଦାସୀ ହାତ ରନ୍ଧା ଖାଏ ନାହିଁ, ନଈକୂଳକୁ ନେଇ ଫୋପାଡ଼ି ଦିଏ, କହେ ଛୁଟୁକାଉ, ଚମ୍ପୀଚୋରୀ ହାତରେ କି ଚମ୍ପାଦେଈ ଖାଉ । କେହି ନଖାଉ, ସେତ ବନ୍ଧ ହୋଇଥାଉ । ଏହିପରି ସବୁଦିନେ କରେ । ସେ ନଈକୂଳେ ଗୋଟିଏ ଧୋବା ଲୁଗା କାଚୁଥାଏ, ସେ ରାଜାଙ୍କ ଧୋବା, ଏହା ସେ ପ୍ରତିଦିନ ଦେଖେ । ଦିନେ ଯାଇ ରଜାଙ୍କୁ କହିଲା, ମଣିମା ! ଗୋଟିଏ କଥା କହିବାକୁ ଭାରି ଭୟ ମାଡ଼ୁଚି, ରଜା କହିଲେ କିଛି ଭୟନାହିଁ କହ । ଧୋବା କହିଲା ମଣିମାଙ୍କ ଉଆସରୁ କିଏ ଗୋଟିଏ ନିତିନଈକୂଳକୁ ଯାଏ, ଭାତ ନଈକୂଳେ କୁଢ଼ାଇ ଦିଏ, କହେ ଛୁଟୁ କାଉ, ଚମ୍ପୀଚୋରୀ ହାତରେ କି ଚମ୍ପାଦେଈ ଖାଉ ? କେହି ନ ଖାଉ ସେତ ବନ୍ଧ ହୋଇ ଥାଉ । ରଜା ନିଜେ ଏକଥା ଦେଖିବାକୁ ଦିନେ ଲୁଚି

ରହିଲେ, ଦେଖିଲେ ଦାସୀ ଭାତଗୁଡ଼ାକ କୁଡ଼ାଇଦେଇ ଏପରିକହୁଚି ହଠାତ୍ ବାହାରି ପଡ଼ି ଦାସୀକୁ ଏ କଥାମାନଙ୍କର କାରଣ ପଚାରିଲେ ଚମ୍ପାଦେଇ ନାହିଁ ୨ ହେଉଥାଏ, ଶେଷରେ ରଜା ଜଗର କରିବାରୁ ସବୁ କଥା ଅଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କହିଲେ । ରଜା ଘରକୁ ଗଲେ, ଗୋଟାଏ କୋପର ଖୋଳାଇଲେ, ଚମ୍ପୀରେଖକୁ ଡକାଇ ପଚାରିଲେ ଏଥିତରେ କେତେ ଧାନ ସମ୍ଭାଇବ । ଏ ଅଡ଼୍ ଏତେକଥା ଜାଣିଚି ? ନାଇଁ ପଡ଼ି ଖଣିକୁ ଅନାଇଲା, ରଜା ତାକୁ ଖଣି ଭିତରକୁ ପେଲି ଦେଲେ, ତଳକଣ୍ଟା ଉପରକଣ୍ଟା ପକାଇଦେଲେ, ମାଟି ଘଟିଦେଲେ ଚମ୍ପାଦେଈକି ପାଟବଣୀ କଲେ,ଘର ଦୁଅର କଲେ, ସୁଖେରେରହିଲେ, ମୁଁ ଗଲିକୁ କଥା ନ କହିଲେ । ମୋ କଥାଟି ସରିଲା, ଇତ୍ୟାଦି ।

— § —

## କାଉଖମ୍ଭ କଥା ।

ଗୋଟିଏ ସାଧବଟିଏ ଯେ ତାହାର ସାତ ଝିଅ । ଦିନେକହୁପଡ଼ିଚ ସାତ ଭଉଣୀଯାକ ଅଗଣାରେ ଖେଳୁଥିଲେ, ବଡ଼ିର କଲେ ଜହ୍ନ କୋଉଠି ଛାଡୁଚି ଚାଲ ଯିବା ଦେଖିବା । ସାତ ଭଉଣୀଯାକ ଗଲେ, ଯାଇଁ ଗୋଟିଏ ବୁଢ଼ୀଅସୁରୁଣୀ ଦୁଅରେ ଜହ୍ନ ଛାଡୁବାର ଦେଖିଲେ, ସେଇଠି ସଞ୍ଜ ପାହିଲା । ଦେଖିଲେ ବୁଢ଼ୀଅସୁରୁଣୀ ଧାନ ଉପାଉଚି ଗୋଟାଏ ଚୋଡ଼ ଚୂଲିରେ ମୁହାଇ ଦେଇଚି ଅଉ ଗୋଟାଏ ଗୋଡ଼ ଯ୍ୟାଡ଼କୁ ଲମ୍ବାଇ ଦେଇଚି । ବୁଢ଼ୀଅସୁରୁଣୀ ଏମାନଙ୍କୁ ଦେଖିଲାକ୍ଷଣି କହିଲା,ଅସଲେ ପିଲମାନେ କୁଆଡ଼େ ଯାଉଚ, ଏଇଠି ବସ, ଖେଳ, ପିଲମାନେ କହିଲେ ନାହିଁ ଅମେ ଜହ୍ନ କୋଉଠି ଛାଡୁଚି ଦେଖିବାକୁ

ଆସିଥିଲୁଁ, ଆମ ଘରକୁ ଆମେ ଫେରି ଯାଉଛୁଁ । ସେମାନଙ୍କୁ ଅଣ୍ଟେଙ୍କ ଭି ଦାଢ଼ ବୁଢ଼ୀଅସୁରୁଣୀ କେତେ ଫୁସୁଲାଇଲା, ଏମାନେ କେହି ରହିଲେ ନାହିଁ, ଚାଲି ଆସିଲେ । କେତେକ୍ଷଣ ପରେ ବୁଢ଼ୀଅସୁରୁଣୀର ପିଲାମାନେ ଚରିବାକୁ ଯାଇଥିଲେ ଆସିଲେ । ବୁଢ଼ୀଅସୁରୁଣୀ କହିଲା କୁଆଡ଼େ ଯାଇଥିଲ, ଏତେବେଳେ କି ଆସିଲ; ଏହି ଦଣ୍ଡକ ମଧ୍ୟରେ ଆସିଥିଲେ ଥାଇଥିଲା କି ସୁନ୍ଦର ଦରବ ଖାଇଥାନ୍ତ; କଇଁସୀ କାକୁଡ଼ି ପରି ମୁଡୁ ୨ କରି ଚୋବାଇ ଥାନ୍ତ, କି ସୁନ୍ଦର ପିଲାଚୁଡ଼ାଏ ଆସିଥିଲେ । ଏବେ ଯାଅ ତାଙ୍କ ଘରକୁ ଜଣକ କାନରେ ମୁଁ ଖୋସଣ ବାନ୍ଧି ଦେଇଛି, ଖୋସଣ ଝଙ୍ଗି ୨ ଯାଉଥିବ, ଗଛ ଉଠି ୨ ଯାଉଥିବ, ଫୁଲ ଫୁଟି ୨ ଯାଉଥିବ ସେହି ବାଟକୁ ଅନାଇ ୨ ଯିବ; ସେମାନଙ୍କୁ ପାଇବ । ଅସୁରପିଲାମାନେ ଦୌଡ଼ିଲେ, ସାଧବଝିଅଙ୍କ ପାଖରେ ଲାଗିବାକୁ ଅଳପ ବାଟ ଅଛି ଏମାନେ ପଛକୁ ଅନାଇ ଦେଲେ, ଦେଖିଲେ ଅସୁର ଛୁଆ ସାତଟା ତାଙ୍କ ପଛେ ୨ ଦୌଡ଼ୁଛନ୍ତି । ଏମାନଙ୍କ ବୁଦ୍ଧି ହଜିଗଲା; କଣ କରିବେ ବୋଲି ଅଜବୁଦ୍ଧି ଦିଶିଲା ନାହିଁ । ବାଟରେ ଗୋଟିଏ ଅମ୍ବଗଛ ଥିଲା ତା ପାଖକୁ ଯାଇଁ ସାଧବଝିଅମାନେ କହିଲେ, ହେ ଅମ୍ବଗଛ ତୁ ଯଦି ସତ୍ୟଯୁଗର ଗଛ ହୋଇଥିବୁ ତୁ ଫାଟି ଯିବୁ ଆମେ ତୋ ଭିତରେ ପଶିଯିବୁ, ତୁ ବୁଜିହୋଇ ଯିବୁ । ଅସୁରଛୁଆସବୁ ଆସି ପହଞ୍ଚିଲା ବେଳକୁ ଏମାନେ ଅମ୍ବଗଛରେ ପଶିଗଲେଣି । ସେ ଗଛମୂଳେ ଗୋଟାଏ ପୋଖରୀ ଥିଲା; ଅସୁରଛୁଆମାନେ ସେ ପୋଖରୀରୁ ପାଣି ଆଣି ଗଛମୂଳେ ଅଜାଡ଼ି ୨ ପୋଖରୀର ପାଣି ଶୁଖାଇ ଦେଲେ । ଗଛକୁ ଦୋହଲାଇ ୨ ଓପାଡ଼ି ତଳେ ପକାଇ ଦେଲେ । ଧୋବାଘରୁ କୁରାଢ଼ି ଆଣି ଗଛକୁ ଖଣ୍ଡ ଖଣ୍ଡ କରି କାଟି ପକାଇଲେ, ମଞ୍ଜି ଗୋଟି ମୁଣ୍ଡାଇ ଘରକୁ ନେଇ ଗଲେ । ନେଇ ବାଡ଼ହୁଅରେ ପକାଇ କୁରାଢ଼ୀରେ ତାକୁ ଚିରିବାକୁ ବସିଲେ ସାଧବଝିଅମାନେ ସେ କାଠ ଭିତରୁ ହୁଳହୁଳି ପକାଇଲେ । ବୁଢ଼ୀଅସୁରୁଣୀ ହୁଳହୁଳି ଶୁଣି ତାର ପିଲାମାନଙ୍କୁ ମାରି ଗୋଡ଼ାଇଲା,

କହିଲା ମୋ ଦୁଆରେ ତ ଜାଣୀ କି ଗୋଯାଣୀ କି କଣଗୋଟାଏ ପକାଇଛ, ଯାକୁ ଉଠାଅ । ଅସୁରକୁଅମାନେ ମାଉଗାଳ ଖାଇ ସେ କାଠଗରକୁ ନେଇ ସେ ଅମ୍ବଗଛ ମୂଳେ ପକାଇ ଦେଇ ଅସିଲେ । ସେତିବେଳକୁ ସଞ୍ଜ ଲାଗିଥିଲା, ଏ ପିଲାଗୁଡ଼ିକ କାଠଭିତରୁ ବାହାରିଲେ, କେନସ୍ତେ ବନସ୍ତେ ଘରକୁ ଯିବାକୁ ବସିଲେ । ଯାଇଁ ବାଟରେ ବଣାହୋଇ କିଏ କୁଆଡ଼େ ଗଲେ । ସବା ସାନ ଝିଅଟି ବୁଲି ୨ ଗୋଟିଏ ରଜାନଅର ଦେଖିଲା, ସେ ନଅର ଦୁଆରେ ଗୋଟିଏ କାଠଖମ୍ବଥିଲା, ସେଇଟି ପଚାରିଲା, କହିଲା ଯେମନ୍ତ ସତ୍ୟଯୁଗ ହୋଇଥିବ, ଏ ଖମ୍ବ ଫାଟିଯିବ ମୁଁ ଭିତରେ ପଶିଯିବି । କାଠଖମ୍ବ ଫାଟିଗଲା, ସାଧବ ଝିଅ ଭିତରେ ପଶିଗଲା । ସେଇଥିରେ ଥାଏ; ରାତିରେ ସମସ୍ତେ ଖାଇ ପିଇ ଶୋଇଲେ, ଏବେଥିରୁ ପଦାକୁ ବାହାରେ, ଖାଧୁଆପାଧୁଆ କରେ, ଫେର ସେଇଥିରେ ପଶିଯାଏ, ଏହିପରି ସବୁଦିନେ କରୁଥାଏ । ସେ ରଜାର ପୁଅ ସବୁଦିନେ ଶୁଣେ ଯେ ଗୋଟିଏ କିଏ ଦୁଆରେ ଝୁଣୁ ହୋଇ ଆସ ଯା କରୁଚି, ମାତ୍ର କିଛି ବୁଝିପାରେ ନାହିଁ । ଦିନେ ସେ ରଜାଙ୍କ ଦୁଆରେ ପାଲା ହେଲା, କେତେ ଲୋକ ଦେଖିବାକୁ ଆସିଲେ । ସାଧବଝିଅ କାଠଖମ୍ବରୁ ବାହାରି ପାଲା ଦେଖିବାକୁ ଗଲା । କେହି ଦେଖିବେ ନାହିଁ ବୋଲି ମେଘନାଦ ପାଚେରି ଉପରେ ବସି ପାଲା ଦେଖୁଥାଏ । ରଜାପୁଅ ସେଠାରେ ଘୋଡ଼ାଦୌଡ଼ କରୁଥାଏ, ତାର ପାଚେରି ଉପରକୁ ନଜର ପଡ଼ିଗଲା, ଦେଖେ ଯେ ଉତ୍ତମ ସୁନ୍ଦରୀ ସ୍ତ୍ରୀଟିଏ ବସିଚି, ତାକୁ ଦେଖି ପାଚେରି ଆଡ଼କୁ ଦୌଡ଼ି ଆସିଲା । ରଜାପୁଅ ଆସିବାର ଦେଖି ସାଧବ ଝିଅ ଦୌଡ଼ି ଆସି କାଠଖମ୍ବରେ ପଶିଗଲା, ରଜାପୁଅ ଆଉ ଏହା ଦେଖି ପାରିଲା ନାହିଁ ପାଚେରି ଉପରୁ ଦୌଡ଼ିଆସିଲାବେଳେ ସାଧବଝିଅ ଗୋଡ଼ରୁ ନେପୁର ପଟିଏ ଖସିପଡ଼ି ଥିଲା, ରଜାପୁଅ ତାକୁଇ ପାଇ ରଖିଥାଏ, ସବୁବେଳେ ଦେଖୁଥାଏ । ମନେ ୨ ଖାଲି ଭାବି ହେଉଥାଏ ଏ ନେପୁରର ଏହେ

ସୁନ୍ଦର, ସେ ସ୍ତ୍ରୀ କେତେ ସୁନ୍ଦରୀ ହୋଇ ନ ଥିବ । ଏହାପରେ ଝୁରି ରାଜାପୁଅର ଅଉ ଅବସ୍ଥା (୧) ରହିଲା ନାହିଁ, ଖାଲି କଣ୍ଠା ହୋଇଗଲା । ଅନେକ ବଇଦ ଲାଗିଲେ, ରାଇଜର ଚେଷ୍ଟା ହେଲା; କାହିଁରେ କିଛି ଭଲ ହେଲା ନାହିଁ । ରାଜାପୁଅ ବରାବର ମଲାସମାନ ହୋଇଗଲା । ବଞ୍ଚିବାରର ଅଉ ଆଶା ନାହିଁ, ରାଜାପୁଅ କହିଲା ମୋର ଭଉଣୀମାନଙ୍କୁ ଡକାଅ ମୁଁ ସେମାନଙ୍କୁ ଦେଖିବି । ଭଉଣୀମାନଙ୍କ ପାଖକୁ ଖବର ଗଲା, ସମସ୍ତେ ଆସିଲେ, ଖାଲି ସାନଭଉଣୀ ଆସି ନ ଥାଏ । ସାନ ଭଉଣୀ ଘର ବହୁତ ଦୂର, ଅସ୍ତୁ ଅସ୍ତୁ ବାଟରେ ଗଉଡମାନଙ୍କୁ ଖରା ବରଷା ପାରିବାକୁ ପଡିଲା । ଗୋଟିଏ ବଟମୂଳେ ସୁଆରକୁ ଉଡ଼ ଦେଇ ଗଉଡମାନେ ଜଳଖିଆ କରିବାକୁ ଗଲେ । ରାଜଝିଅ ସେଇଠି ଥାଏ ସେ ବରଗଛରେ ଗୋଟାଏ ଫୁଲଶାଗୁଣୀର ବସା । କୋଉଠି ମଢ଼ ପଡ଼ିଥିଲା ଯେ ଶାଗୁଣୀ ଖାଇକରି ଆସିଥାଏ, ପିଲାଙ୍କପାଇଁ ଆଣି ନ ଥାଏ ପିଲାଯାକ କେଁକେଁର ଲଗାଇ ଥାନ୍ତି, ମା ତୁ ଖାଇଲୁ ଆମପାଇଁ ଆଣିଲୁ ନାହିଁ, ଶାଗୁଣୀ କହିଲା ତେମେ ସବୁ କାହିଁକି ସେମିତି ହେଉଛ, ରାଜାପୁଅ ଏହିକ୍ଷଣି ମରିବ ତେମେ ଆନନ୍ଦରେ ଖାଇବ । ପିଲାଯାକ କହିଲେ ନାହିଁ ମା ସେ କାହିଁକି ମରିବ, ଆମେ ପଛକେ ନ ଖାଉଁ ସେ ଜୀଇ ଥାଉ । ଶାଗୁଣା କହିଲା ତାକୁ ଅଉ କିଏ ବଞ୍ଚାଇବ ତାରର ସବୁ ଏମନ୍ତି କଥା ହୋଇଛି, କିଏ ଜାଣିଥାନ୍ତା କି ସେ କାଉ ଖମ୍ବକୁ ଭାଙ୍ଗି ଦେଇଥାନ୍ତା ଯେ ସେ ସାଧବଝିଅ ବାହାରି ପଡନ୍ତା, ତାକୁ ଦେଖିଲାକ୍ଷଣ ରାଜାପୁଅ ଦେହରେ ଜୀବନ ପଶିଯାନ୍ତା । ଏହା ସବୁ ସାନଭଉଣୀ ଶୁଣି ସୁଆର ଉଠାଇବାକୁ ଗଉଡ ସାଙ୍ଗେ ଉଛନ ଲଗାଇଲା । ଗଉଡମାନେ ସୁଆର ନେଇ ରଜାଙ୍କ ଦୁଆରେ ଉଡ଼ିଲେ

---

(୧) ଦେହର ବଳ ସ୍ୱାସ୍ଥ୍ୟ ।

ରଜାଙ୍କ ଘରେ କାନ୍ଦବୋବାଳି ପଡ଼ିଥାଏ, ତାହାଙ୍କ ମନରେ ସୁଖ ନ ଥାଏ । ସାନଭଉଣୀ ଯାଇ ଦେଖେ ଯେ ଭାଇ ଶୋଇଅଛି, ହଠାତ୍ ତାହାକୁ କିଛି ନ କହି ଗୋଟାଏ କୁରାଢ଼ି ନେଇ ଆସି, କାଚଖମ୍ବରେ କର ପାହାରେ ଦେଲା । କାଚଖମ୍ବ ଚୂନା ହୋଇଗଲା, ସାଧବ ଝିଅ ତହିଁରୁ ବାହାର ପଡ଼ିଲା । ତାକୁ ଧରିନେଇ ଗଲେ, ରଜାପୁଅ ଆଗରେ ଛିଡ଼ା କରିଦେଲେ, ତାଙ୍କୁ ଦେଖି ତା ଦେହରେ ଜୀବ ପଶିଲା । ରଜାପୁଅ କ୍ରମେ୨ ଭଲ ହୋଇଗଲା, ସେହି ସାଧବ ଝିଅକୁ ବାହା ହେଲା, ଭଉଣୀ ମାନଙ୍କୁ ହଟେଇ ଖେଦେଇ ବିଦା କଲା, ଆନନ୍ଦରେ ସୁଖ ରାଜତ୍ୱ କଲା, ମୁଁ ଗଲାକୁ କଥା ନ କହିଲା । ମୋ କଥାଟି ସରିଲା ଇତ୍ୟାଦି ॥

———❋———

## ମଣ୍ଡାଗଛ ବା ଗୌଡ଼ପିଲା କଥା ।

ଗୋଟିଏ ଗଉଡ଼ୁଣୀଏ ଯେ ତାର ଗୋଟିଏ ପୁଅ । ଗଉଡ଼ ଟୋକାଟି ନିତି ଗାଈ ଜଗିବାକୁ ଯାଏ, ବଣ ପାଖରେ ଗୋଟାଏ ମଣ୍ଡା-ଗଛ ଥାଏ ତହିଁରେ ଚଢ଼େ, ମଣ୍ଡାପିଠା ଖାଏ, ବେଳବୁଡ଼ ହେଲା-ଷଣି ଗାଈ ନେଇ ଘରକୁ ଆସେ । ଦିନକର ବୁଢ଼ୀ ଅସୁରୁଣୀ ଆସିଲା କହିଲା ହଇରେ ପୁଅ କଣ ହେଉଛୁ କି ? ଗଉଡ଼ଟୋକା କହିଲା ମଣ୍ଡାପିଠା ଖାଉଛି । ଅସୁରୁଣୀ କହିଲା ଅରେ ପୁଅ ମତେ ଗୋଟିଏ ଦିଅନ୍ତୁ । ଗଉଡ଼ଟୋକା ମଣ୍ଡାଟିଏ ପକାଇ ଦେଲା । ବୁଢ଼ୀ ଅସୁ-ରୁଣୀ କହିଲା, ଅରେ ପୁଅ ମୋ ହାତକୁ ଗୋଟାଏ ଦେ । ଗଉଡ଼-ଟୋକା ମଣ୍ଡାପିଠାଟିଏ ତା ହାତକୁ ବଢ଼ାଇ ଦଉ ଦଉ ଅସୁରୁଣୀ

ଜଣକଲା ନା ନେଇଗଲା ଗଉଡ଼ ଟୋକା'କୁ, ଗୋଟାଏ ମୁଣିରେ ପୁରା-ଇଲା, ନେଇ କରି ଗଛ ମୁଣ୍ଡେଇକରି । ଅଧବାଟରେ. ହେଲନ୍ତି ବୁଢ଼ୀ ଅସୁରୁଣୀକି ପୋଷରୀ ମାଡ଼ିଲା, ବାଟରେ ଥୋଇ ଦେଲା ମୁଣିଟିକି, ପୋଷରୀଗଲା । ଗଉଡ଼ ଟୋକା ଜଣକଲା, ମୁଣିକି ଚିରି ଦେଲା, ସେଥିରୁ ବାହାରିଲା, ସେ ମୁଣିରେ ଗୁଡ଼ାଏ ପଙ୍କ ପାଣି କଣ୍ଟା ଏଣ୍ଡୁ ଟେଣ୍ଡୁ ପୂରାଇ ଦେଲା, ଘରକୁ ପଳେଇ ଆଇଲା । ବୁଢ଼ୀ ଅସୁରୁଣୀ ଆସିଲା ମୁଣିଟିକି ମୁଣ୍ଡାଇଲା, ନେଇକରି ଗଲା । ବାଟରେ ଜଣ ହେଉ ଥାଏ ନା ବୁଢ଼ୀଅସୁରୁଣୀ ମୁଣ୍ଡରେ କଣ୍ଟା ଫୋଡ଼ି ହୋଇ ଯାଉ ଥାଏ । ଏ କହୁଥାଏ ଗୁଲ ମୁଣ୍ଡପୋଡ଼ା, ଘରକୁ ଗଲେ ତୋ ରଙ୍ଗ ବୁଝିବି । ଏହିପରି ବାଟଯାକ ଚିଡ଼ିକରି ଯାଉଥାଏ । ଘରକୁ ଗଲା ମୁଣିକି ଦୁମ୍ କିନା କଚାଡ଼ି ଦେଲା ଫିଟେଇ କରି ଦେଖିଲା । ଦେଖିଲା କେବଳକୁ ଆଉ ଗଉଡ଼ଟୋକା ସେଥିରେ ନାହିଁ, ଏଣ୍ଡୁ ଟେଣ୍ଡୁ ଗୁଡ଼ାଏ ପଡ଼ିଛି । ବୁଢ଼ୀ ଅସୁରୁଣୀ କହିଲା ଆରେ ଆରେ ମତେ ଠକି ଦେଇ ଗଲା ବାହାରି, ଆଉ କଣ କରିବି । ଭୁନ ହୋଇ ରହିଲା । ଦି ଚାରି ଦିନ ଛାଡ଼ିଦେଲା, ଫେର୍ ଗଲା ସେହି ମଞ୍ଚାଗଛ ପାଖକୁ । ଦେଖିଲା ଗଉଡ଼ଟୋକା ଗଛରେ ଚଢ଼ି ମଞ୍ଚା ପି । ଗଉଚ, ବୁଢ଼ୀ ଅସୁରୁଣୀ କହିଲା, ପୁଅରେ ମତେ ଟୋଟିଏ ଦିଅନ୍ତୁ । ଗଉଡ଼ଟୋକା କହିଲା ଅଉକଣ, ସେ ଦିନତ ଧରିକରି ନେଇ ଗଲୁ, ଆଜି କାହିଁକି ଦେବି ? ତଳେ ପଡ଼ିଚ ମୋଟେଇକରି ଖାଉନାହୁଁ । ଅସୁରୁଣୀ କହିଲା ନାହିଁରେ ପୁଅ, ସେଦିନ ସିନା ନେଇଗଲି ଆଜି ନେବି ନାହିଁ, ମୋ ହାତକୁ ଟୋଟିଏ ଦେ । ଗଉଡ଼ଟୋକା ଟିପାଟିଏ ତା ହାତକୁ ଦେଲା ବୁଢ଼ୀଅସୁରୁଣୀ ଜଣକଲା ନା ତା ହାତକୁ ଧରି ଗଛରୁ ଓଟାରିଆଣିଲା ଫେର୍ ମୁଣିରେ ପୂରାଇଲା, ନେଇକରି ଘରକୁ ଗଲା, ଆଉ କେଉଁଠି ଥୋଇଲା ନାହିଁ ବାଟରେ, ବରାବର ଘରକୁ ନେଇଗଲା । ଘରେ ମୁଣିରୁ ବାହାର କରି, ଝିଅକୁ ଡାକି କହିଲା ଝିଅ ଲେ ମୁଁ ଯାଉଛି

ଗାଧୋଇ, ଯାକୁ ଭଲକରି ଗନ୍ଧବାଡ଼ି ରଖ । ଝିଅ ଗଜଡଠୋକାକୁ ଏପାଖ ସେପାଖ କରି ଦେଖିଲା, ଦେଖିଲା ତା' ମୁଣ୍ଡରେ ଗହଳର ବାଳ । ଅସୁରୁଣୀ ଝିଅ କହିଲା ହଇରେ ପୁଅ ତୋ' ମୁଣ୍ଡରେ ଏତେ ବାଳ କୋଉଠୁ ହେଲା ? ଏ ଠୋକା ମିଛରେ କହିଲା; ମୋ ମା ମୋ ମୁଣ୍ଡକୁ ଢେଙ୍କିରେ କୁଟିଦିଏ ସେ ବାଳ ବଢ଼ିଯାଏ । ଅସୁରୁଣୀଝିଅ କହିଲା ତୁ ହଉଏ ମୋ ମୁଣ୍ଡ ଢେଙ୍କିରେ କୁଟିଦିଅନ୍ତୁ । ଗଜଡ଼ଠୋକା କହିଲା ମୁଁ କଣ ନାହିଁ କରୁଛି ? ଗଜଡଠୋକା ଢେଙ୍କି ଠେକିଦେଲା, ଅସୁରୁଣୀ ଝିଅ ମୁଣ୍ଡକୁ ଦେଖାଇ ଦେଲାଯାଉଁ, ଏ କଣକଲା ଢେଙ୍କି ଛାଡ଼ିଦେଲା ଯେ ତା ମୁଣ୍ଡ କୁଟି ହୋଇଗଲା । ଅସୁରୁଣୀଝିଅ ଛଟପଟ ହୋଇ ମରିଗଲା । ସେଇଠୁ, ଗଜଡଠୋକା ଅସୁରୁଣୀ ଝିଅଠାରେ ଯେତେ ଅଳଙ୍କାର ଥିଲା ତାକୁ ସବୁ ଲଗାଇଲା, ତା ଲୁଗା ପିନ୍ଧିଲା, ତା ବେଶ ଧରି ତାକୁ ଠିକି ଠିକି କରି ବନାଇଲା, ଗନ୍ଧବାଡ଼ି ଥୋଇଦେଲା । ବୁଢ଼ୀ ଅସୁରୁଣୀ ଗାଧୋଇ ଆସିଲାକ୍ଷଣି ତାକୁ ବାଢ଼ିଦେଲା । ସେ ଖାଇ ବସିଲା, ଗଜଡଠୋକାକୁ କହିଲା ଝିଅ ଲୋ ତୁ ଖାଇ ବସୁନାହୁଁ । ଏ କହିଲା ନାହିଁ ମା ତୁ ଖାଇସାରୁ ମୁଁ ପଛରେ ଖାଇବି । ବୁଢ଼ୀ ଅସୁରୁଣୀ ଖାଇ ସରିଲା, କହିଲା ଝିଅ ଲୋ ମୋ ମୁଣ୍ଡରୁ ଦଣ୍ଟା, ଉକୁଣୀ ଦେଖନ୍ତୁ, ଗଜଡ଼ଠୋକା ମୁଣ୍ଡ ଦେଖିଲାବେଳକୁ ଯା ମୁଣ୍ଡରେ ଜମା ବାଳ ନାହିଁ ଗୋଟିଏ ବାଳ ହଲୁ ହଲୁ ହୋଇ ହଲୁଛି । ଗଜଡଠୋକା କହିଲା ହଇଲୋ ମା, ତୋ ମୁଣ୍ଡରେତ ଜମା ବାଳ ନାହିଁ, ଏ ଗୋଟିକ କାହିଁକି ଅଛି ? ଅସୁରୁଣୀବୁଢ଼ୀ କହିଲା ଆଲୋ ଝିଅ ସେ ବାଳଟିରେ ମୋର ଜୀବନ ଅଛି, ତାକୁ ଛିଣ୍ଡାଇଦେଲେ ମୁଁ ମରିଯିବି । ଗଜଡଠୋକା ଯା ଯାଉଁ ଶୁଣିଲା, ସେ ବାଳଟିକୁ ରୁଟକରି ଛିଣ୍ଡେଇଦେଲା ଯେ ବୁଢ଼ୀ ଅସୁରୁଣୀ ମରିଗଲା । ଅସୁରୁଣୀକୁ ପୋପାଡ଼ି ଦେଇ ଗଜଡଠୋକା ଘରକୁ ଆଇଲା, ବାପମାଙ୍କ ଆଗେ ସବୁ କଥା କହିଲା । କେତେଦିନ

ବାପ୍ ଗଉଡ଼ଟୋକା ବଖ୍ରା ହେଲା, ପୁଣରେ ଘର ଦୁଆର କଲା, ମୁଁ ଘରରୁ କଥା ନ କହିଲି । ମୋ କଥାଟି ସରିଲା ଇତ୍ୟାଦି ।

## ଡାଳିମ୍ବକୁମର କଥା ।

ଗୋଟିଏ ରଜାଟିଏ ତାର ଦୁଇ ଭାର୍ଯ୍ୟା । ତାହାର ପିଲା ସନ୍ତାନ ହେଲ ନାହି । ରଜା ଭାରି ଚିନ୍ତା କରଥାନ୍ତି, ଖୁବ୍ ଦାନ ଧ୍ୟାନ କରୁଥାନ୍ତି କେମନ୍ତ ଗୋଟିଏ ପୁଅ ହେବ । ଦିନକର ଜଣେ ସାଧୁ ପୁରୁଷ ଆସିଲେ, ସେ ପଚାରିଲେ ରଜାଙ୍କର ଏତେ ଦାନ ଧ୍ୟାନ କାହିଁକି ହେଉଛି ? ମନ୍ତ୍ରୀ କହିଲେ ରଜାଙ୍କର କିଛି ପୁଅ ଝିଅ ହେଉନାହିଁ ବୋଲି ଧର୍ମ କରୁଛନ୍ତି । ଏ ବିଧାତା ପୁରୁଷ ଛଦ୍ମବେଶରେ ଆସିଥାନ୍ତି । ସେ ରଜାଙ୍କୁ ଡକାଇଲେ, ତାଙ୍କୁ ଗୋଟିଏ ଡାଳିମ୍ବ ଟିଏ ଦେଇ କହିଲେ, ଏ ଫଳଟି ନିଅ ତମ ରାଣୀଙ୍କ ଭିତରୁ ଯେ ଆଗେ ଋତୁମତୀ ହେବ, ଋତୁସ୍ନାନ ଦିନ ତାକୁ ଖାଇବାକୁ ଦେବ ଯେ ସେ ଖାଇ ଗର୍ଭବତୀ ହେବ । କିଛି ଦିନ ଗଲା; ସାନ ରାଣୀର ଆଗେ ଋତୁ ହେଲା । ରଜା ତାକୁ ସେ ଡାଳିମ୍ବ ଫଳଟି ଦେଲେ, ସେ ଖାଇ ଗର୍ଭବତୀ ହେଲା । ବଡ ରାଣୀ ସାନ ରାଣୀକୁ ଜମା ଦେଖିପାରେ ନାହିଁ, ତହିଁରେ ଫେର୍ ଏ ଗର୍ଭ ହେବାର ଦେଖି, ଏଥର ହିଂସା ଦ୍ୱିଗୁଣ ହେଲା । ଏ ଭାରି ଦୁଃଚିନ୍ତାରେ ଥାଏ କିପରି ସାନ ରାଣୀର ପିଲାକୁ

ନଷ୍ଟ କରିବ । ଦିନେ ବଡରାଣୀ ଧାଈ ହାତରେ ଗୁଡ଼ାଏ ଜହରବଡ଼ି ଦେଇ ପଠାଇଲା । ଧାଈ ଯାଇ ସାନ ରାଣୀଙ୍କୁ କହିଲା ବଡ ରାଣୀ ଯାହାକୁ ଦେଇଛନ୍ତି ତମେ ଖାଇବ । ଏ ସେହି ସାଧୁଙ୍କ ନାମରେ ତାକୁ ଖାଇଦେଲା; ତାର କିଛି ହେଲା ନାହିଁ । ଦଶମାସଦଶଦିନ ପୂରିଲାରୁ ସାନ ରାଣୀର ଗୋଟିଏ ପୁଅ ହେଲା । ରଜା ବଡ ଖୁସି ହେଲେ ରାଜ୍ୟରେ ଢେଙ୍ଗୁରା ଦିଆଗଲା, ସମସ୍ତେ ଆନନ୍ଦ ଉତ୍ସବ କଲେ । ଷଠୀ ପଞ୍ଚୁଆଡି ବାରଯାତ୍ରା ଏମାନ ଗଲା, ଏକୋଇଶା ଦିନ ସେ ସିଦ୍ଧପୁରୁଷ ଫେର୍ ଆସିଲେ, ଏ ପୁଅର ନାମ ଡାଳିମ୍ବକୁମର ଦେଇ-ଗଲେ । ସାନରାଣୀକି ଗୋପନରେ କହିଗଲେ ତୋର ପୁଅ ସହ-ଜରେ ମରିବ ନାହିଁ । ତମର ଯେଉଁ ଦାଣ୍ଡ ପୋଖରୀ ଅଛି,ତହିଁରେ ଗୋଟାଏ ରଘବମାଛ ଅଛି, ତାର ପେଟଭିତରେ ଗୋଟିଏ ଫରୁଆ-ଅଛି, ତହିଁରେ ଯେଉଁ ଡାଳିମ୍ବହାର ଅଛି, ଏହାର ଜୀବନ ସେଥିରେ ଅଛି । ସେ ହାରକୁ ଫରୁଆ ଭିତରୁ ବାହାର କରି ଯଦି କେହି-ଲଗାଇବ (୧),ତେବେ ଏ ପୁଅ ମରିବ । ଏହା କହି ସେ ସିଦ୍ଧ ପୁରୁଷ ଗଲେ ବାହାରି । ଡାଳିମ୍ବ କୁମରକୁ ଛ ସାତ ବର୍ଷ ହୋଇଗଲା ପାଠ ହେଉକା ଖୁବ୍ ପଢିଲା । ତାର ପାଖରେ ବଡ ଶରଧା, ବହୁତ ପାରା ପୋଷିଥାଏ । ପାରାଙ୍କୁ ଚରିବାକୁ ଛାଡଦେଲାବେଳେ, ଦିଇଟା ଗୋଟାଏ ବଡରାଣୀ ଦୁଆରକୁ ଯାନ୍ତି ବାହାରି ଚରିବାକୁ । ବଡରାଣୀ ତାଙ୍କୁ ସବୁ ଧରି ରଖେ, ଏ ମାଗିଲେ ଯାହାକୁ କହେ ଯା ତୋ ବୋଉକୁ ପଚାରିବୁ ତୋ ଜୀବନ କେଉଁଠି ଅଛି, ବତୁଳି ଆସି ଯେବେ କହିବୁ, ତେବେ ତୋ ପାରା ଦେବି । ଡାଳିମ୍ବକୁମର ଯାଇ ମାକୁ ପଚାରେ, ତା ଜୀବନ କୋଉଠି ଅଛି, ମା କହେ ତୁ ସେଥିରୁ କଣ ପାଇବୁ ? ଏହିପରି କହି ଭୁଲାଇଦିଏ । ବଡ ରାଣୀ ତ ପାରା ଦିଏ

୧ । ପିନ୍ଧିବ ।

ନାହିଁ । ଏହିପରି ଗୋଟିଏ ଦେଷ୍ଟି ରଖୁ, ବଡରାଣୀ ସବୁ ପାରାଯାକ ରଖିଲା । ଏ ମାଗିଲାକୁ କହିଲା ତୋ ଜୀବନ କୋଉଠି ଅଛି ନ କହିଲେ ମୁଁ କେବେଁ ମାସ ଦେବି ନାହିଁ । ତୋ ବୋଉ ଯଦି ନ କହୁଛି, ତେବେ ତୁ ରୁଷିଲେ ସେ କହିବ । ଏ ଗଲା ସେଦିନ, ଖାଇ ଡଲେ ଚଢ଼ିଲା ମା ସଙ୍ଗେ ଏକ ଯିଦ୍ କଲା କହ ମୋ ଜୀବନ କୋଉଠି ଅଛି ? ମା କହିଲା ଏ କଥା ତୋତେ କିଏ ଶିଖେଇଛି ? ଏ କହିଲା ମତେ କେହି ଶିଖେଇ ନାହିଁ, ମୁଁ ନିଜେ ଜାଣିବି ମତେ କହ । ଏହିପରି ଲଗାଇ ମାଠାରୁ ସବୁ ଜାଣିଲା ଯା ଜୀବନ କୋଉଠି ଅଛି ଆସି ବଡରାଣୀ ଆଗରେ ସବୁ କହିଦେଲା । ବଡରାଣୀ ଶୁଣିଲା ଯେଉଁଠୁଁ ସବୁ ପାର ଛାଡିଦେଲା । ତହିଁ ଆର ଦିନ ବଡରାଣୀ କଣ କଲା ଧାଇ ହାତରେ ରଜାଙ୍କ ପାଖକୁ ଖବର ଦେଲା, କହିଲା ରଜାଙ୍କୁ କହିବୁ, ବଡରାଣୀଙ୍କ ଦେହ ଦୁଃଖ ହୋଇଛି, ଦାଣ୍ଡ ଗାଡ଼ିଆ ମାଛ ମରିବେ, ସେଥିରେ ଯେଉଁ ରାଘବମାଛ ଅଛି ତାକୁ ଖାଇଲେ ତାଙ୍କ ଦେହ ଭଲ ହେବ । ରଜା ତ ଆଉ ଏତେ କଥା ଜାଣନ୍ତି ନାହିଁ । କହିଲେ ହଉ ଜାଲ ପକାଅ । ବଡ ଜାଲ ଥରେ ବୁଲାଇ ଆଣି ଆଉ ଥରେ ବୁଲାଇ ଅଣିଲା ବେଳକୁ ସେହି ରାଘବମାଛ ପଡ଼ିଲା । ତାକୁ ବଡ଼ ରାଣୀଙ୍କ ଉଆସକୁ ନେଇଗଲେ । ବଡ଼ ରାଣୀ ନିଜେ ସେ ମାଛକୁ କେଲେଇ ବସିଲା । ତାକୁ ଦଗର (୧) କରି କାଟି ଦେଲା ପେଟକୁ ଚିରି ଦେଇ ହୀରା ଫରୁଆକୁ କାଢି ରଖିଲା, କହିଲା ନଅ ଯାକୁ ବାଟକୁଟି ତରକାରି କର । ଏ ଫରୁଆରୁ ହୀରାଟିକୁ କାଢି ବେକରେ ପକାଇଲା ଯୋଉଠୁ ତେଣେ ଛାଲମ୍ବି କୁମରଟି ମରି-ଗଲା । ସାନରାଣୀ କାନ୍ଦି ଉଠିଲା, ଅଉ ସମସ୍ତେ ଯାଇ ଦେଖନ୍ତି ଯେ

୧ ଦୁଇଖଣ୍ଡ ।

ଡାଲିମ୍ବକୁମରର ମରି ପଡ଼ିଲା । ରଜା ବଡ଼ ବ୍ୟସ୍ତ ହେଲେ, କହିଲେ ନାଥ ତାକୁ ଦାହାକରନ୍ତୁ (୧) ଗୁଆଭିଥ ଚନ୍ଦନ କାଠରେ । ସାନ ରାଣୀ କହିଲେ ମୋ ପୁଅ ପୋଡ଼ା ହେବ ନାହିଁ କି ପୋତା ହେବ ନାହିଁ, ବନସ୍ତ ଭିତରେ ଗୋଟିଏ ଘର ତୋଳା ହେବ, ସେ ଘରଭିତରେ ସବୁ ଖାଇବା ପଦାର୍ଥ ରହିବ, ସେଠାରେ କୂଅ ପୋଖରୀ ଖୋଳା ହେବ; ଶୃଙ୍ଗାରପାଣିଯାକ ପାଚେରୀ ବୁଲିବ, ଫୁଲ ବଗିଚା ହେବ ମୋ ପୁଅ ସେଇଥିଭିତରେ ରହିବ । ସବୁ ସେହିପରି ହେଲା । ଡାଲିମ୍ବକୁମରକୁ ନେଲେ ସେମନ୍ତ ଖଟସୁଦ୍ଧା (୨) ସେହି ଘରେ ଥୋଇଦେଇ ଆସିଲେ । ଏଥିଡ଼େ ବଡ଼ ରାଣୀ କଣ କଲେ, ସେ ଦ୍ୱାରକୁ ଦିନଯାକ ଲଗାଏ ରାତି ହେଲାକ୍ଷଣି ଥୋଇଦିଏ, ରାଜା ଦେଖିବେ ବୋଲି । ଡାଲିମ୍ବକୁମର ଦିନଯାକ ମରେ, ରାତି ହେଲାରୁ ଜୀଇଁ ଉଠେ । ଦ୍ୱାର ଥୋଇଦେଲାକ୍ଷଣି ଉଠି ଖାଏ ପିଏ, ଫୁଲ ବଗିଚାକୁ ଯାଏ ବୁଲେ, ଏହିପରି ରାତିଯାକ କରେ, ସକାଳ ହେଲାରୁ ମରି ଶୁଏ । ଆରଦେଶ ରାଜା ଝିଅକୁ ବରଘର ଲାଗିଲା, ଯୋଉଠି ଯେତେ ଖୋଜିଲେ କୋଉଠି ବର ଘଟଣା ହେଲା ନାହିଁ । ରାଜା ବଡ଼ ବ୍ୟସ୍ତ ହୋଇ ପଣ୍ଡିତ ମାନଙ୍କୁ ଡ଼କାଇଲେ, ପଚାରିଲେ ଝିଅକୁ କାହିଁକି ବର ମିଳୁ ନାହିଁ । ଏମାନେ ଗଣନା କରି କହିଲେ, ଯେ ଦିନରେ ମରୁଥିବ ରାତିରେ ଜୀଇଥିବ ଝିଅକୁ ସେ ବିବାହ ହେବ । ରାଜା କହିଲେ ଏ ଅଲକ୍ଷଣୀଟାର ମୁହଁ ଚାହିଁ ନା. ଗୋଟାଏ ମଲା ମଣିଷ ବାହା ହେବ, ଏମନ୍ତ ଗୋଟାଏ ବର ଫେର୍ କୋଉଠି ମିଳିବ । ଝିଅକୁ ବାହାର କରିଦିଅ । ସେ ଝିଅକୁ ବାହାର କରି ଦେଲେ । ଝିଅ ବୁଲି ବୁଲି ଆସି ଯେଉଁ ବନସ୍ତରେ ଡାଲିମ୍ବକୁମର

---

୧ ଦାହକରନ୍ତୁ ।    ୨ ଖଟ ସହିତରେ ।

ଅଛୁ, ସେଇଠି ପହୁଞ୍ଚିଲା ଦେଖିଲା ଯେ ବନସ୍ତ ଭିତରେ ଗୋଟିଏ ଘର ଦିଶୁଛି, ଯାଇଁ ସେ ଫୁଲବଗିଚ୍ଛରେ ରହିଲା । ଅପଣା ଦୁଃଖରେ କାନ୍ଦୁଥାଏ । ସଞ୍ଜ ହେଲାରୁ ରଜାପୁଅ ଜୀଇ ଉଠିଲା ଗାଧୋଇ ଆସି ସନ୍ଧ୍ୟାବାଡ଼ି ଲା, ଖାଇଲାପିଇଲା, ଫୁଲବାଉକି ଗଲାବେଳକୁ, ଏ ବସି କାନ୍ଦୁଛି । ତାଳମ୍ବକୁମର ଯାଇଁ ସବୁ ପଚାରିଲା । ଏ କହିଲା ମୁଁ ସେ ଦେଶର ରଜାଝିଅ, ମୋ ପାଇଁ ବରଘର ଲାଗୁଥିଲା; ପଣ୍ଡିତମାନେ ଏପରି କହିବାରୁ ବାପା ମତେ ବାହାର କରି ଦେଇଛନ୍ତି । ତାଳମ୍ବ-କୁମର କହିଲା, ତମେ ଡର ନା ମୁଁ ଏଠା ଘରଟା କରିଛି, ମୁଁ ଦିନରେ ମରେଁ. ରାତିକି ବଞ୍ଚେ । ଏହା କହିଲା, ରଜାଝିଅକୁ ଘରଭିତରକୁ ନେଇଗଲା । ଦିହେଁ ଆନନ୍ଦରେ ରହିଲେ ଖାଇଲେ ପିଇଲେ, ବସିଲେ ଉଠିଲେ । ଦିନକର ରଜାଝିଅ ପଚାରିଲା ତାଳମ୍ବକୁମରକୁ ତମେ କାହିଁକି ଏପରି ହୁଅ, ଦିନରେ ମରି ରାତିରେ ଜୀଅ । ଏ ଆଦ୍ୟରୁ ଅନ୍ତ ପର୍ଯ୍ୟନ୍ତ ସବୁ କହିଗଲା । ରଜାଝିଅ ଶୁଣି ମନ କଥା ମନେ ରଖିଥାଏ । କେତେଦିନ ଗଲା ଏହାର ଗର୍ଭ ହେଲା ଗୋଟିଏ ପୁଅ ଜନ୍ମ ହେଲା । ପୁଅକୁ ଦି ଚାରି ବର୍ଷ ହୋଇଗଲା, ଦିନକର ଏ କଣ କଲା ପୁଅକୁ ବାପ ପାଖରେ ଛାଡ଼ିଦେଲା, ଗୋଟିଏ ଭଣ୍ଡାରୁଣୀ ବେଶ ଧରି ଟୋକେଇଟିଏ କାଖେଇଲା ପଚାରି ପଚାରି ଗଲା, ରଜାଘରକୁ । ଆଗେ ସାନରାଣୀ ପାଖକୁ ଗଲା, ତାଙ୍କୁ ଦଣ୍ଡବତ କଲା, ପଚାରିଲା ବଡ଼ରାଣୀ କେଉଁଠି ଅଛନ୍ତି । ସାନରାଣୀର ପୁଅ ମଲାଦିନ ମନରେ ଜମା ସୁଖ ନାହିଁ, କହିଲା ସେ ଘରେ କେଉଁଠି ଅଛନ୍ତି ଦେଖ। ଏ ଟୋକେଇକା ବଡରାଣୀଙ୍କ ପାଖକୁ ଗଲା ତାଙ୍କୁ କହିଲା କେତେ-ଦିନ ହେଲା ନଖ ତୋଳା ହୋଇ ନାହିଁ ଅସ ତୋଳି ଦେବି ବଡରାଣୀ ପଚାରିଲେ ତୁ କିଏ ? ତୋର ଘର କେଉଁଠି ? ଏ କହିଲା ମୋ ଘର ଏ ଦେଶରେ ନୁହେଁ, ମୁଁ ତମ ଭଣ୍ଡାରୁଣୀର ମଉଳାଝିଅ

ଭଉଣୀ, ଆସ ଉଲଦି ତେଣେ ମୋ ପୁଅ କାନ୍ଦୁଥିବ, ଆସ ମୋର ନଖ ତୋଳି ଦେଇ ଯାଇଥିବ, କାଲି ପୁଅକୁ ଘେନିକରି ଆସିବ ଯେ ଅଳତା ଲଗାଇ ଦେଇଯିବ । ତର' ହୋଇ ନଖ ତୋଳି ଦେଇ ସେ ଦିନ ଗଲା ବାହାରି । ତହିଁ ଆରଦିନ ପୁଅକୁ ଘେନି କରି ଅଛିଲା । ପୁଅକୁ ଖିଆଇଥାଏ, ବଡରାଣୀ ବେକରେ ଯେଉଁ ହାର ଅଛି ମୁଁ ତାକୁ ମାଗିବି ଦେଖିବାକୁ, ସେ ମନେ କରିକରି ଦେଖିବାକୁ ଦେବ ଯେତେବେଳେ, ସେତେବେଳେ ତୁ କଣ କରିବୁ ହାରକୁ ଛଡ଼ାଇ ନେଇଯିବୁ ମୋ ହାତରୁ ଧରିବୁ, ମୁଁ ତୋହ ହାତରୁ ଅଣିଲାବେଳେକୁ କାନ୍ଦିବୁ ଯେ ମୁଁ କହିବି ଥାଉ ପିଲା କାନ୍ଦୁଚି ଆଜି ନେଇ ଯାଇଥାଉ;କାଲି ବୁଝିଲେ ମୁଁ ଦେଇଯିବି । ବଡରାଣୀଙ୍କ ନଖ ତୋଳି ବସିଚି, ବେକକୁ ଅନାଇ ଦେଲା କହିଲା ସାନ୍ତାଣି ଏ ହାର କୋଉଠୁ ଅଣିଥିଲ, ଯାକୁ କୋଉ ଦେଶ-ବଣିଥି ଗଢିଛି ? ଏତ ଆମ ଦେଶ ଗଢାପରି ଦିଶୁ ନାହିଁ । ବଡରାଣୀ କହିଲା ଯାକୁ ଆମ ବାପ ଘରଅଡ ବଣିଥି ଗଢିଛି । ଏ କହିଲା ଦେଖି ସାନ୍ତାଣି ଏ କେମନ୍ତ ? ବଡରାଣୀ ବେକରୁ ବାହାର କରି ଦେଲା । ଏ ଦେଖୁଁ ପୁଅ ଛଡାଇ ନେଇ ଧରିଲା । ଧରିଥାଏ,ଏ ନଖ ତୋଳିସରିଲା, ଅଳତା ଲଗାଇ ଦେଇ ସାରିଲା ପୁଅକୁ କହିଲା ତାଙ୍କ ହାର ଦେ ଆମର ଘରକୁ ଯିବା । ପୁଅ ଆଉ ଛାଡ଼ିଲା ନାହିଁ, କାନ୍ଦିକରି ଉଡ଼ିଲା । ଏ କହିଲା ଦେଉଚ ନାହିଁ, ମୁଁ ଘରକୁ ନେଇ ଯାଉଚି କାଲି ସକାଳୁ ହାର ଦେଇଯିବି ବୁଝିଗଲେ । ରାଣୀ କହିଲେ ହଉ ନେ । ଏ ହାର ନେଇ ଅସିଲା ବାହାରି, ଆଉ ଫେରାଇ ଦେଲା ନାହିଁ । ସେହି ଦିନଠାରୁ ଡାଳିମ୍ବକୁମର ସର୍ବଦା ଜୀଇଲା ଆଉ ମଲା ନାହିଁ । ରଜାଙ୍କର ମାଳୀ ଯାଏ ସେଠାକୁ ଫୁଲପାଇଁ ସବୁ ଦିନେ, ଯାହା ନିଃଶବ୍ଦ ହୋଇଥିଲା ସେଠାରି, ଏବେ ସର୍ବଦା ଗହଳଚହଳ ଲାଗିବାର ଶୁଣିଲା

ଆସି ରାଜାଙ୍କୁ କହିଲା ମଣିମା ଗୋଟିଏ କଥା କହିବାକୁ ଭାରି ଭୟ ଲାଗୁଛି, ରଜା କହିଲେ କଣ କହ । ମାଳୀ କହିଲା ମଣିମା ବନସ୍ତ ଭିତରେ ଯୋଉ ନଅରରେ ଷ୍ମୃଙ୍କର ଡାଳିମ୍ବକୁମରକୁ ରଖି ଦେଇ ଆସିଥିଲେ ସେଠାକୁ ମୁଁ ଆଗେ ଫୁଲତୋଳି ଯାଉଥିଲି ଯେ ସବଦ ନିଃଶବ୍ଦ ହୋଇ ଯାଉଥିଲି, ଏବେ କେତେଦିନ ହେଲା ସେଠାରେ ବଡ଼ ଗହଳଚହଳ ଲାଗିଛି । ରଜା କହିଲେ କାଲି ସେ ଆଡ଼କୁ ବୁଲିଯିବ ଦେଖି ଆସିବା । ସେ ଦିନ ଗଲା ତହିଁ ଆରଦିନ ରଜା ଗଲେ ସେ ଆଡ଼କୁ ବୁଲି । ଡାଳିମ୍ବକୁମର ଘର କବାଟ ଫିଟାଇ ଦେଖିଲାବେଳକୁ ଡାଳିମ୍ବକୁମର ଖଟ ଉପରେ ବସିଛି । ତା ଭାରିଯା ତଳେ ବସିଛି, ପୁଅ ଡାଳିମ୍ବକୁମର ପାଖେ ବସିଛି । ରଜା ଦେଖି କାବା ହୋଇଗଲେ, ଡାଳିମ୍ବକୁମରକୁ ସବୁ କଥା ପଚାରିଲେ । ଡାଳିମ୍ବକୁମର ସବୁ କହିଗଲା ବଡ଼ ରାଣୀ ଯାହା କରିଥିଲା ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ରଜାଙ୍କୁ ସବୁ କହିଲା । ସେ ରଜାଝିଅ ଆଉ ପୁଅକୁ ଦେଖି ରଜା ପଚାରିଲେ ଏ ସବୁ କିଏ ? ରଜାଝିଅ କହିଲା ମୁଁ ଆପଣଙ୍କର ବୋହୂ, ଅଉ ଯେତେ କଥା ତା ସମ୍ବନ୍ଧରେ ଘଟିଥିଲା ସବୁ କହିଗଲା, ଭଣ୍ଡାରୁଣୀ ବେଶ ହୋଇ ଯେମନ୍ତ ବଡ଼ ରାଣୀଙ୍କଠାରୁ ହାର ଆଣିଥିଲା ସବୁ କହିଗଲା । ରଜା ପୁଅ ବୋହୂ ନାତି ଦେଖି ବଡ଼ ଖୁସି ହେଲେ ସେମାନଙ୍କୁ ଘରକୁ ନେଇଗଲେ, ଗୋଟାଏ ଗାଡ଼ି ଖୋଳାଇ ବଡ଼ ରାଣୀକୁ ତହିଁରେ ପକାଇ ଦେଇ ତଳକଣ୍ଟା ଉପରକଣ୍ଟା ଛାଡ଼ି ଦେଲେ । ସାନ ରାଣୀ ପୁଅ ବୋହୂ ନାତି ନେଇ ଘର ଦ୍ୱାର କଲା, ମୁଁ ଗଲୁକୁ କଥା କହିଲି ନାହିଁ । ମୋ କଥାଟି ସରିଲା, ଇତ୍ୟାଦି ।

# କଲୁରିବେଣ୍ଟ କଥା ।

ଗୋଟିଏ ବ୍ରାହ୍ମଣଟିଏ, ଦୁଆର ଓଳାଉଁ୨ କଲରା ମଞ୍ଜିଟିଏ ପାଇଲା । ତାକୁ ପଦାରମୂଳେ ଗୋଟିଏ ଗାଡ଼ି ଖୋଳି ଲଗାଇ ଦେଲା, କହିଲା କାଲିକି ଯେବେ ଉଠିଥିବୁ ତ ଉଠିଥିବୁ, ନଇଲେ ମାମୁଁଘର କଟୁରୀ ଆଣି ହାଣିବି । ସତକୁ ସତ ତହିଁ ଆରଦିନ ଗୋଟିଏ ଗଜା ହେଲା ସେ ଦିନ ସେ କହିଲା, କାଲିକି ଯେବେ ଗୁଡ଼ା୨ ପତ୍ର ହୋଇଥିବୁ ତ ହୋଇଥିବୁ, ନଇଲେ ମାମୁଁଘର କଟୁରୀରେ ହାଣିବି । ଯା'ର ସେହିପର ଗୁଡ଼ାଟି ପତ୍ର ହେଲା । ସବୁଦିନେ ଏହିପରି କହି୨ ସେ କଲରାଗଛରେ ଗୋଟିଏ କସି ଧଇଲା । କସିଟି ପାଚିଲା ହେଲା, ଲାଲ ଟହ ଟହ ହୋଇ ପାଚିଲା । ଗୋଟିଏ କାଉ ଆସି କହିଲା ହେ କଲୁରିବେଣ୍ଟ ମୁଁ ତତେ ଖାଇବି । କଲୁରିବେଣ୍ଟ କହିଲା ତୁ ଥଣ୍ଟ ଧୋଇ ଆ ଯା କି ମତେ ଖାଇବୁ । କାଉ କୂଅ ପାଖକୁ ଗଲା, କହିଲା—

ଦେ କୂଅ ଦେ ପାଣି, ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏଁ କଲୁରିବେଣ୍ଟ ।

କୂଅ କହିଲା ଯା କୁମ୍ଭାରଘରକୁ କଳଶ ଆଣିବୁ କି ପାଣି କାଢ଼ିବୁ । କାଉ କୁମ୍ଭାର ଘରକୁ ଗଲା କହିଲା—

ଦେ କୁମ୍ଭାର କଳଶ ଟୋଟି
କାଢ଼ଇଁ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏ କଲୁରିବେଣ୍ଟ ।

କୁମ୍ଭାର କହିଲା, ଯା ବିଲକୁ ମାଟି ଆଣିବୁ କି କଳଶ ଗଢ଼ିଦେବି । କାଉ ବିଲକୁ ଗଲା, କହିଲା—

ଦେ ବିଲ ଦେ ମାଟି
ଗଢ଼ୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏ କଲୁରବେଣ୍ଟ ।

ବିଲ କହିଲା, ଯା ହରିଣଠାରୁ ଶିଙ୍ଗ ଆଣିବୁ କି ମାଟି ଖୋଳିବୁ । କାଉ ହରିଣଠାରେ କି ଗଲା, କହିଲା—

ଦେ ହରିଣ ଦେ ଶିଙ୍ଗ ଖୋଳଇଁ ମାଟି
ଗଢ଼ୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏ କଲୁରବେଣ୍ଟ ।

ହରିଣ କହିଲା ଯା କାଳିଗାଈଠାରୁ ଦୁଧ ଆଣିବୁ କି; ମୁଁ ଖାଇବି, ତତେ ଶିଙ୍ଗ ଦେବି । କାଉ ଗଲା, କହିଲା—

ଦେ କାଳୀଗାଈ ଦେ ଦୁଧ, ଖାଉ ହରିଣ ଦେଉ ଶିଙ୍ଗ
ଖୋଳଇଁ ମାଟି
ଗଢ଼ୁ କୁମ୍ଭାର କଳଶ ଗୋଟି
କାଢ଼ଇ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏଁ କଲୁରବେଣ୍ଟ ।

କାଳୀଗାଈ କହିଲା ଯା, ହିଡ଼ରୁ ଘାସ ଆଣ୍ ଯା, ମୁଁ ଖାଇବି ଦୁଧ ଦେବି ।
ଏ ହିଡ଼ ପାଖକୁ ଗଲା, କହିଲା—

ଦେ ହିଡ଼ ଦେ ଘାସ, ଖାଉ କାଳୀଗାଈ ଦେଉ ଦୁଧ
ଖାଉ ହରିଣ ଦେଉ ଶିଙ୍ଗ
ଖୋଳଇଁ ମାଟି
ଗଢ଼ୁ କୁମ୍ଭାର କଳଶ ଗୋଟି
କାଢ଼ଇଁ ପାଣି ଧୁଅଇଁ ଥଣ୍ଟ
ଧାଇଁ ଧାଇଁ ଖାଏଁ କଲୁରବେଣ୍ଟ ।

ହଉ କହିଲା ଯା କମାର ଘରୁ ଦାଆ ଆଣିବୁ ଓ ଘାସ କାଟିବୁ । କାଉ କମାର ଘରକୁ ଗଲା, କହିଲା—

ଦେ କମାର ଦେ ଦା, କାଟିବି ଘାସ
ଖାଇବ କାଳୀଗାଈ ଦେବ ଦୁଧ
ପିଇବ ହରଣ ଦେବ ଶିଙ୍ଘ
ଖୋଳିବି ମାଟି
ଗଢ଼ିବ କୁମ୍ଭାର କଳଶ ଗୋଟି
କାଢ଼ିବି ପାଣି ଧୋଇବି ଥଣ୍ଟ
ଯାଇଁ ଧାଇଁ ଖାଏ କଲୁରବେଣ୍ଟ ।

କମାର କହିଲା ବସ୍ ଦାଆ ଗଢ଼ି ଦେଉଛି । କାଉ ବସିଲା, କମାର ଦାଆଟିଏ ଗଢି ପଚାରିଲା, କେମନ୍ତ ନେବୁ ? କାଉ କହିଲା ମୋ ପିଠିରେ ଦେ, ଏ କହିଲା, ପିଠି ପୋଡ଼ିଯିବ ଅଉ କୋଉଠି ନବୁ ? କାଉ କହିଲା ଥଣ୍ଟରେ ଦେ, ଏ କହିଲା ଥଣ୍ଟ ପୋଡିଯିବ ଅଉ କୋଉଠି ଦେଖା । କାଉ ବେକ ଦେଖାଇ ଦେଲା, କମାର ତତଲା ଦାଆ ଖଣ୍ଡି କାଉ ବେକରେ ଥୋଇଦେଲା । କାଉର କଲୁରବେଣ୍ଟ ଖାଇବା ଲୋଭ ଲାଗିଛି, ଦାଆଖଣ୍ଡି ବେକରେ ନେଇକରି ଗଲା, କେତେଦୂର ଯାଇ ଦାଆ ତାତରେ ପୋଡ଼ି ହୋଇ ମରିଗଲା । ଗୋଟିଏ ବୁଢା ଚଷାଟିଏ ଗୋଟିଏ ବୁଢ଼ୀ ସ୍ତ୍ରୀଟିଏ ଦୋଟି ଯାଉଥିଲେ, ସେ ବାଟରେ, ବୁଢ଼ୀ ପାଇଲା କାଉଟିକ, ବୁଢ଼ା ପାଇଲା ଦାଆଖଣ୍ଡି । ବିଚାରିଲା କାଉଟିକି ତୁଣ କରି ଖାଇବି, ଘରକୁ ଗଲା, କାଉଟିକି କାଟିଲା କୁଟିଲା ତୁଣ କଲା, ଥୋଇ ଦେଇ ଗାଧୋଇ ଗଲା । ବୁଢ଼ୀ କହିଲା ଦେଖେଁ, ତୁଣ କେମନ୍ତ କିସ୍ପା ତରକାରି ହୋଇଛି ? ଚାଖୁଁ ଚାଖୁଁ ସବୁତକ୍ ଖାଇଦେଲା । ବଲେଇଟା ମାର ହାଣ୍ଡିରେ ମୁହଁ ଘଷିଦେଇ ସେଇଠି ପକାଇଦେଲା, ହେଁସଟାଏ ଘୋଡ଼ି ହୋଇ ଶୋଇଲା ଜର, କହୁଣି ବୋଲି । ବୁଢା ଗାଧୋଇ ଆସିଲାବେଳକୁ ବୁଢ଼ୀ କଣ୍ଟୁଚି

ବଲ୍ଲଇଟାଏ ମଇ ପଡ଼ିଛି, ହାଣ୍ଡିରେ କିଛି ଗୁଣ ନାହିଁ । ବୁଢ଼ା ସବୁ କଥା ବୁଝି ପାରିଲା, ବୁଢ଼ୀକି ଗୁଡ଼ାଏ ଗାଳି ଦେଲା । ବୁଢ଼ୀ ଛଡ଼ାବାର ଲୋକ ନୁହେଁ, ସ୍ୱଣ ଉଦ୍ୟମ ପକାଇ ବଲେଇର ସବୁ ଦୋଷ ବୋଲି ପ୍ରମାଣ କରିଦେଲା । ବୁଢ଼ା ଥଣ୍ଡ କଣ କରିବ ଭୂନ ହୋଇ ରହିଲା, ଏଣେ କଲୁରିବେଣ୍ଟ କାଉକୁ ଅନାଇ ୨ ଅଭିମାନରେ ତିନଫାଳ ହୋଇଗଲା । ମୋ କଥାଟି ସରିଲା; ଫୁଲ ଗଛଟି ଇତ୍ୟାଦି ।

## ଅଜଗର ସାପ କଥା ।

ଗୋଟିଏ ରଜାଟିଏ ଯେ ଘର ଦୁଇ ଭାରିଯା, ସାନ ରାଣୀର ଟୋକାଟିଏ ଝିଅ, ବଡରାଣୀର ଗୋଟିଏ ପୁଅ । ରଜା ସାନରାଣୀକି ବଡ଼ ଦେଖି ପାରନ୍ତି, ବଡ଼ରାଣୀକି ଜମା ଦେଖି ପାରନ୍ତି ନାହିଁ । ବଡ଼ରାଣୀକି ଗୋଟିଏ ଅଲଗା ଘର ଛାଡ଼ି ଦେଇଥାନ୍ତି, ତାକୁ ରୋଜ୍ ହାତଟେକିଆ କରି ପଠାଇ ଦେଉଥାନ୍ତି । ତା ଝିଅକୁ ଧାନକ୍ଷେତ ଜଗିବାକୁ ପଠାନ୍ତି, ବାଯା (୧) ଖାଇଯିବେ ବୋଲି । ଝିଅ ନିତି ଯାଏ କହେ ହୋରେ ବାଯା ହୋ । ଅର ଦେଶର ରଜା ପୁଅ ଶାପରେ (୨) ଅଜଗର ସାପ ହୋଇ ସେହି ବନସ୍ତରେ ଥାଏ । ରଜାଝିଅ ଯେତେବେଳେ 'ହୋ ରେ ବାଯା ହୋ' କହି ବାଯା ହରୁଡ଼ାଏ, ରଜାପୁଅ ସେତେବେଳେ ଅଜଗର ସାପ ଭିତରେ ଥାଇ କହେ, 'ମାକୁ କହ ଯା ମୁଁ ତମକୁ ବଭା ହେବି' । ରଜାଝିଅ ସବୁଦିନ

(୧) ଏକପ୍ରକାର ଶସ୍ୟହାରୀ ପକ୍ଷୀ (୨) ଅଭିଶାପ ଦ୍ୱାରା ।

ଏହିପରି ଶୁଣେ । ଦିନକର ବଡ଼ରାଣୀଙ୍କ ଆଗେ କହିଲା ବୋଇ, ମୁଁ ନାଚି ହୋଇରେ ବାସ୍ଥା ହେବା, ଏହା କହି ବାସ୍ଥା ହୁରୁଡ଼େଇଲାବେଳକୁ ବଣଘରରୁ କିଏ ତୋଠାଏ କହେ 'ମାକୁ କହ ଯା ମୁଁ ତମକୁ ବଭା ହେବ ।' ବଡ଼ ରାଣୀ ଶିଖାଇଦେଲା, ଆଜି ଯେତେବେଳେ ସେ ଏହା କହିବ ତାକୁ କହିବୁ, 'ତମେ ଯଦି ଆମକୁ ବଭା ହେବ, କାଲି ସକାଳୁ ଆମ ଦାଣ୍ଡଦୁଆରେ ଥିଅ ହେବ ।' ଏତ ଆଉ ଜାଣେ ନା ଅଜଗର ସାପ ବୋଲି, ମା ଯେମନ୍ତ କହିଥିଲା ସେହିପରି କହିଲା ତାକୁ । ତହିଁ ଆରଦିନ ସତ ପାଇନାହିଁ ଅଜଗର ସାପ ଆସି ଦାଣ୍ଡଦୁଆରେ ଗର୍ଜନ କରୁଛି । ସମସ୍ତେ କହିଲେ ଏ କଥଣ ଏ କଥଣ ଅଜଗର ସାପ ଠାଏ କାହିଁକି ଏମନ୍ତ ଦାଣ୍ଡରେ ରହିଛି । ବୁଝୁ ବୁଝୁ ବଡ଼ରାଣୀ କହିଲା ଏମନ୍ତ ମୋ ଝିଅକୁ ବଭା ହେବାକୁ ଆସିଛି । ସମସ୍ତେ ବଡ଼ ଦୁଃଖିତ ହେଲେ, କହିଲେ ସେତେ ସୁନ୍ଦର ଝିଅକୁ ଅଜଗର ମୁହଁରେ ଦେବ । ସାନରାଣୀ କହିଲା କହିଛିତ ବଭା କରିବ ନାହିଁ କଣ ? ଆଉ କଣ ଅଜଗରକୁ ଫେରାଇ ଦେବ ? ରଜାଏ ସେଇଆ କହୁଛନ୍ତି । ବଡ଼ରାଣୀ ଅନ୍ଧ ତା ଝିଅ କାନ୍ଦୁଥାନ୍ତି, ବଭାଘରର ସବୁ ଆୟୋଜନ ହେଲା, ବେଦୀ, ଢୋଲାଦେଲ ସବୁଠାରୁ ସବୁ ହେଲା । ପୁରୋହିତ ଆସିଲେ, ଭଣ୍ଡାରୁଣୀ ଆସିଲା, ଅଜଗର ସାପକୁ ଧରିଆଣି ବେଦୀ ଖୁମ୍ବରେ ବାନ୍ଧିଦେଲେ, ପୁରୋହିତ ମନ୍ତ୍ର ପଢ଼ି ବଭାଘର କରିଦେଲେ । ସବୁ ସରିଲା, ଚତୁର୍ଥୀଦିନ ରାତିରେ ମଧୁଶଯ୍ୟାଘରେ ବିଛଣା କରିଦେଲେ, ଝିଅକୁ ଖଟ ଉପରେ ଶୁଆଇଦେଲେ, ଅଜଗର ସାପକୁ ଖଟ ଗୋଡ଼ରେ ବାନ୍ଧିଦେଲେ, ଆସିଲେ ସମସ୍ତେ ଶୋଇଲେ । ନିଃଶବ୍ଦ ହେଲା ଯୋଉଠୁ, ଏ ରଜାପୁଅ ସାପଖୋଳରୁ ବାହାରିଲା, ବାହାରକୁ ଗଲା । ରଜାଝିଅକୁତ ଥିଉ ନିଦ ନ ଥାଏ, ରଜାପୁଅ ବାହାରିଗଲା ଯେମନ୍ତ ଖୋଳକୁ ଲୁଚି, ଏ କଥଣ

କଲା ଖୋଳଟିକ ନିଆଁ ଲଗାଇ ପୋଡ଼ିଦେଲା । ରଜାପୁଅ ତେଣୁ ଆସି ଦେଖେ ଯେ ଖୋଳ ପୋଡ଼ିଗଲାଣି କହିଲା, କିକଲ ? ମୋ ଖୋଳ ପୋଡ଼ି ଦେଲ, ମୋ ଦେହ ପୋଡ଼ୁଛି । ଏ କହିଲା ସେଠାରେ ଚୂଆ ଚନ୍ଦନ ଥୁଆ ହୋଇଛି ବୋଲି ବୋଇପଡ଼, ଦେହ ପୋଡ଼ିବ ନାହିଁ । ରଜାପୁଅ ଚୂଆଚନ୍ଦନରେ ଦେହ ଶୀତଳ କରି ରଜାଝିଅ ପାଖରେ ଖଟଉପରେ ବସିଲା, କଥାବାର୍ତ୍ତା ହେଲେ । ରଜାଝିଅ ପଚାରିଲା ତମେ କାହିଁକି ଅଜଗର ସାପ ହୋଇଥିଲ ? ରଜାପୁଅ କହିଲା ଆମେ ସବୁ ପିଲା ହୋଇଥିଲୁଁ, ଦିନେ ଖେଳୁ ଖେଳୁ ଗୋଟିଏ ବୁଢ଼ୀ ପାଖେ ଟାପରା ଲଗାଇଲୁଁ, ସେ ମୋତେ ଶାପ ଦେଲା କି ତୁ ଅଜଗର ସାପ ହୋଇ ଯା । ମୁଁ ତାକୁ ଯେତେ ନେହୁରା ହେଲି, କେବେଁ ମୁକ୍ତ କଲାନାହିଁ, କହିଲା, ଆରଦେଶ ରଜାଝିଅ ଆସିବ ଧାନ ଜଗି ତୁ ତାକୁ ବାହାହେବୁ, ସେ ତୋ ଖୋଳକୁ ପୋଡ଼ିଦେଲେ ତୁ ଯାଇଁ ମୁକ୍ତହେବୁ । ଏହିପରି କଥାବାର୍ତ୍ତା ହେଉ ହେଉ ରାତି ପାହା ପାହା ହେଲା, ନିଦଲାଗିଗଲା ଶୋଇପଡ଼ିଲେ ଦିନ ପ୍ରହରେ ହୋଇଗଲାଣି, ଆଜି କବାଟ ଫିଟିଲା ନାହିଁ, କବାଟ ତାଡ଼ି ଫିଟାଇଲା ବେଳକୁ ଯୁଆଙ୍କ ନିଦ ଭାଙ୍ଗିଗଲା, ରଜାପୁଅ ଲାଜରେ ଦାଣ୍ଡକୁ ପଳାଇଲା, ଝିଅ କବାଟ କଣକୁ ଗଲା ବାହାରି । ସମସ୍ତେ କହିଲେ ଦେଖ ବଡ ରାଣୀଝିଅ ଅଜଗର ସାପ ବାହା ହୋଇଥିଲା, ତା ଭିତରୁ କେମନ୍ତ ସୁନ୍ଦର ରଜାପୁଅ ବାହାରିଲା । ସମସ୍ତେ ଯୋଉଠୁ ଏପରି କହିଲେ ସାନରାଣୀଝିଅ କହିଲା ମୁଁ ଅଜଗର ସାପ ବାହା ହେବି । ରଜା ନାହିଁ ନାହିଁ ହେଉଥାନ୍ତି, ସାନରାଣୀ କହିଲା ନା ମୋ ଝିଅ ଅଜଗରସାପକୁ ବାହା ହେବ ତ । ରଜା ନାଚାର ହୋଇ ହଁ ଭରିଲେ, ଗଣ୍ଡାଏ କି ପାଞ୍ଚଟା ମଣିଷ ପାହାଡ଼କୁ ଗଲେ, ଗୋଟାଏ ଅଜଗର ସାପ ଧରି ଆଣିଲେ । ସେ ଗର୍ଜ୍ଜନ ଛାଡ଼ୁଥାଏ ଯେ ଘରଦ୍ୱାର ଭାଙ୍ଗୁଥାଏ । ତାକୁ ବେଦୀ ଖମ୍ବରେ ବାନ୍ଧିଦେଲେ, ଲଣ୍ଡ ଭଣ୍ଡ କରି ବାହା କରିଦେଇ ପୁରୋହିତ ଗଲେ

ବାହାର । ଗଡ଼କି ଖଟ ଉପରେ ବଇଣା କରି ଆଣି ଝିଅକୁ ଶୁଆଇ-
ଦେଲେ, ଅଜଗରକୁ ଖଟ ଗୋଡ଼ରେ ବାନ୍ଧିଦେଇ ଆସିଲେ । ଧାଈ
ଥାଇ ପାଖ ଘରେ ଶୋଇଥାଏ, ରାତି ଅଧ ହେଲାଣି ଅଜଗର ଯେ
ଖଟ ଗୋଡ଼ରୁ ବାହାରିଲା, ଖଟଉପରକୁ ଯାଇ ସାନରାଣୀ ଝିଅକୁ
ଗୋଡ଼ଆଡ଼ୁ ଗିଳିଲା । ଏ ଡାକିଲା ଧାଈ ଗୋଡ଼ ଗଲା, ଧାଈ ଆର-
ଘରୁ କହୁଥାଏ କୋଇଁ ଗୋଡ଼ରେ ବଳା ପାହୁଡ଼ ଲଗାଇ ଦେଉ-
ଛନ୍ତି, ପାଟି କରୁଛୁ କାହିଁକି ? ଏ କହିଲା ମୋ ଅଣ୍ଟା ଗଲା, ଧାଈ କହିଲା
କୋଇଁ ଚନ୍ଦ୍ରହାର ଲଗାଇ ଦେଉଛନ୍ତି ନା, ଏ କହିଲା ମୋ ହାତ
ଗଲା, ଧାଇ କହିଲା କୋଇଁ ଚୁଡ଼ୀ ଖଡ଼ୁ ଲଗାଉଛନ୍ତି, ଏ କହିଲା ମୋ
ବେକ ଗଲା ଧାଈ କହିଲା କୋଇଁ ଗୁପସରି ପିନ୍ଧାଇ ଦେଉଛନ୍ତି । ଏହି-
ପରି ସାପ ଗୋଟିକଯାକ ଗିଳିଦେଇ ଖଟଉପରେ ଥାଇ ହୋଇ
ଶୋଇଲା । ରାତି ପାହିଲା, ଦିନ ଦିପହର ହେଲାଣି, ଆଉ କବାଟ
ଫିଟିଲା ନାହିଁ । ସାନରାଣୀ ଖାଲି ଛଟପଟ ହେଉଥାଏ, କେମନ୍ତ ବଡ଼-
ରାଣୀ ପରି ଗୋଟିଏ ସୁନ୍ଦର ଜୁଆଁଇ ଦେଖିବ । ବେଳ ଗଡ଼ିଗଲା
ଯୋଉଠୁ କବାଟ ଭାଙ୍ଗି ଘରେ ପଶିଲେ, ଦେଖିଲା ବେଳକୁ ଝିଅ
ନାହିଁ, ଅଜଗର ସାପ ହିଁଡ଼ି ଝିଅକୁ ଗିଳିଦେଇ କରି । ଯୋଉଠୁ
ସମସ୍ତେ ଗଦା ହୋଇ ପଡ଼ିଲେ ଦେଖିବାକୁ, ଅଜଗର ସାପ ଗୋଟାଏ
ଗର୍ଜନ ଗୁଡ଼ ସମସ୍ତଙ୍କୁ ମାଡ଼ିଦେଇ ପାହାଡ଼କୁ ପଳାଇଗଲା । ସାନରାଣୀ
କାନ୍ଦ ବୋବାଇ ରହିଲା । ବଡ଼ରାଣୀ ଝିଅଜୋଇଁ ବେଶ ସୁଖରେ
ହସିଖେଳି ଘରଦୁଆର କଲେ, ମୁଁ ଗଲିରୁ କଥା କହିଲି ନାହିଁ ।
ମୋ କଥା ସରିଲା ଇତ୍ୟାଦି ।

## ନେଉଳଭାଇର କଥା ।

ଗୋଟିଏ ସାଧବ ଥାଏ ଯେ ତାର ସାତ ପୁଅ । ସାତବୋହୂ ସତ ସାଅ ସାଙ୍କ ଗଭ ହୋଇଥାନ୍ତି, ଆମ୍ବକ ସମୟ ହୋଇଛି, ବାରିକି ଗଲେ ଛ ସାଅ ଛଅଟି ଭଲ ଆମ୍ବ ପାଇଲେ, ସବା ସାନ ସା ଗୋଟିଏ ଖଣ୍ଡିଆ ଅମ୍ବ ପାଇଲା । ଯେଝା ଆମ୍ବ ଯେଝା ଖାଇଲେ, ସାନସା ଅମ୍ବଟି ନେଉଳ ଖାଇଥିଲା; ସାନ ସା ସେହି ନେଉଳଖଣ୍ଡିଆଟି ଖାଇଲା । ସମସ୍ତଙ୍କ ଦଶ ମାସ ହେଲା, ସମସ୍ତେ କଷ୍ଟ ପାଇଲେ, ପୁଅ ଜନ୍ମ କଲେ, ସାନ ସା ଗୋଟିଏ ନେଉଳ ଜନ୍ମ କଲା । ସାନ ସାଟି କାନ୍ଦୁଣୀ ମାନ୍ଦୁଣୀ ହେଉଥାଏ । ସମସ୍ତେ କହିଲେ ଏ କାହିଁକି ନେଉଳ ଜନ୍ମ କଲା ? ଛଅସା ସାକ କହିଲେ, ଆମେ ସବୁ ଆମ୍ବଗଛ ମୂଳକୁ ଯାଇଥିଲୁଁ, ଆମେ ଛଅଟି ଭଲ ଆମ୍ବ ପାଇ ଖାଇଲୁ, ସେ ଗୋଟିଏ ଖଣ୍ଡିଆ ଅମ୍ବ ପାଇଖାଇଲା । ତାକୁ ନେଉଳ ଖାଇଥିଲା, ଏ ସେହି ନେଉଳ ଜନ୍ମ କଲା । ସମୀ ପସୁଅତ ସାତପଣି ବୁଡ଼ ସବୁ ସହିଲା । ଚଳା କିଛି ଦିନ, ପୁଅମାନେ ପାଠ ପଢ଼ିଲେ, ଘୋଡ଼ା ଚଢ଼ ଶିଖିଲେ, ସବୁ କଲେ, ନେଉଳଟି ଆଉ କଣ କରିବ ? ତା ମା ପାଖରେ ଥାଏ । ଛ ଭାଇସାକ କହିଲେ, ହେ ଆମର ଚାଲ ବିଦେଶ କରିଯିବା, ସବୁ ଦିନେ କଣ ଘରେ ବସିଥିବା ? ମା ମାନଙ୍କୁ କହିଲେ, ଘୋଡ଼ାରେ ଚଢ଼ିଗଲେ । ନେଉଳ କହିଲା ଆଲୋ ମା ମୁଁ ଯିବି ଭାଇ ମାନଙ୍କ ସାଙ୍ଗେ ? ମା କହିଲା ତୁ କୋଉଠିକି ଯିବୁ ? ତୋତେ କିଏ ମାଡ଼ ପକାଇବ କି କଅଣ କରିବ, ତୁ କୋଉଠିକି ଯିବୁ ? ନେଉଳ କହିଲା ନାହିଁ ମା ମୁଁ ଯିବି, ମା କହିଲା ହଉ ଯା, ତୁହି କାହାର ସଙ୍ଗେ ଝଗଡ଼ା ଲଗାଇବୁ ନାହିଁ । ମା ହଳଦୀ ଟିକିଏ

ତେଲହଳଦୀ ଲଗାଇ ଦେଲା, ଲୁଗା ଖଣ୍ଡେ ଅଣ୍ଟାରେ ଗୁଡ଼ାଇଦେଲା, ଗୁଣ୍ଡଦେଲା । ସେ ଛଅ ଭାଇଯାକ ଘୋଡ଼ାରେ ଯାଉଥାନ୍ତି, ନେଉଳ ଭଣେ ଭଣେ ଯାଉଥାଏ । ବାଟରେ ଗୋଟାଏ ଅମ୍ବଗଛ ଦେଖିଲେ, ତହିଁରେ ଖୁବ୍ ସୁନ୍ଦର ଅମ୍ବ ପାଚିଛି । ଛ ଭାଇଯାକ କହିଲେ ଅହା ! ନେଉଳଭାଇର ସାଙ୍ଗରେ ଥିଲେ ଥାଆନ୍ତେଇଁ ତ, ଅମ୍ବ ପାରି ଦେଇଥାନ୍ତା, ଖାଇଥାଆନ୍ତେଇଁ ଯେମନ୍ତେ । ନେଉଳ ବଣବୁଦାରୁ ବାହାରି-ପଡ଼ି କହୁଛି, ଆରେ ଭାଇ ! ମୁଁ ଅଛି ଟି ମୁଁ । ଏସବୁ କହିଲେ ଅରେ ନେଉଳ ଭାଇତ ଅଛି ! ଦେ ଗଛରେ ଚଢ଼, ଅମ୍ବ ପାର, ଆମକୁ ଦେ । ନେଉଳ ଗଛରେ ଚଢ଼ିଲା, ସବୁ ପାଚିଲା ଭଲ ଅମ୍ବଯାକ ଖାଉଥାଏ, ଯାଙ୍କପାଇଁ ସବୁ କଞ୍ଚା ଅମ୍ବଯାକ ପକାଉଥାଏ । ଏମାନେ କହୁଥାନ୍ତି ନେଉଳଭାଇ ଦେ ମ ଆମକୁ ଭଲ ଅମ୍ବ ? ଏ ଦେଉ ନ ଥାଏ । ଏ ସବୁ କହିଲେ ହଉ ରହ, ତୁ ତଳକୁ ଆସ ତୋହର ରଙ୍ଗ ବୁଝାଯିବ ।

ନେଉଳ ସବୁ ଭଲଯାକ ଅମ୍ବ ଖାଇଲା, ଯାଙ୍କୁ ଆଉ ଦେଲା ନାହିଁ କି ତଳକୁ ଆସିଲା ନାହିଁ । ଏମାନେ ଠିଆ ହୋଇଥାନ୍ତି, ନେଉଳ ତଳକୁ ଆସିଲେ ତାକୁ ମାରିବେ ବୋଲି । ନେଉଳ ଗଛରେ ବସି ବସି କେତେ-ବେଳକେ ତଳକୁ ଆସିଲା । ଏମାନେ କଣ କଲେ ତାକୁ ଗୁଡ଼ାଏ ମାରିଲେ, ସେ ଗଛରେ ବାନ୍ଧିଦେଲେ, ଗଲେ । ନେଉଳ ଓଟାରି ଓଟାରି ହୋଇ ସେଥିରୁ ଫିଟିଲା, ତାଙ୍କର ସାଙ୍ଗେ ସାଙ୍ଗେ ଭଣେ ଭଣେ ଗଲା । ସେମାନେ ବାଟରେ ଗୋଟାଏ ତାଳଗଛ ଦେଖିଲେ, କହିଲେ ନେଉଳଭାଇ-ଟର ଗୁଡ଼ ଅଇଲେ ନାଁ, ଆଣି ଥାଆନ୍ତେଇଁ, କି ପାଚିଲା ତାଳ ଖାଇ ଥାଆନ୍ତେଇଁ । ଏହା କହିଲାକ୍ଷଣି ନେଉଳ ସେହିପରି ବାହାରି ପଡ଼ିଲା କହିଲା ଭାଇ ! ମୁଁ ଅଛି । ନେଉଳ ସେହିପରି ଗଛରେ ଚଢ଼ି ରହି ଯାକ ଖାଉଥାଏ, ମଞ୍ଜିଗୁଡ଼ିକ ଫୋପାଡୁଥାଏ । ସେମାନେ ସେହିପରି ଚଢ଼ିଲେ, ତଳକୁ ଆସିଲାକ୍ଷଣି ନେଉଳକୁ ଗୁଡ଼ାଏ ବାଡେଇଲେ, ସେ

ଗଛରେ ବାନ୍ଧିଦେଇ ଚାଲିଗଲେ । ଏହାପରେ ବାଟରେ ଯୋଉଠି ଗଛ ଦେଖନ୍ତି ସେହିପରି କରୁଥାନ୍ତି, ନେଉଳକୁ ଖୋଜନ୍ତି । ନେଉଳ ଯାଏ, ଫେର୍ ନେଉଳ ସେହିପରି କଲାବେଳେ ଗଛରେ ତାକୁ ବାନ୍ଧି ଦିଅନ୍ତି, ଯାଆନ୍ତି । ଏହିପରି ଯାଇ ଯାଇ ଆରଦେଶ ରଜାଘରେ ପହଞ୍ଚିଲେ । ରଜାଘରେ ଏ ଛଅ ଭାଇଯାକ ରହିଲେ, ନେଉଳଟି ଗୋଟିଏ ଗଣ୍ଡି ବାହ୍ମଣୀ ଘରେ ରହିଲା । ଗଣ୍ଡୀ ବ୍ରାହ୍ମଣୀର କେହି ନ ଥାନ୍ତି, ଖାଲି ଦଶ ବର୍ଷର ପୁଅଟିଏ ଥାଏ । ନେଉଳ କହିଲା ମାଉସି, ମୁଁ ତୋ ଘରେ ଚାକର ରହନ୍ତି ? ଗଣ୍ଡୀ ବାହ୍ମଣୀ କହିଲା ତୁ ଗୋଟାଏ କଣ ଚାକର ହେବୁ ? ନେଉଳ କହିଲା, ମୁଁ ତୋର ସବୁ କାମ କରିବି, ତୁ ମତେ ରଖ । ଗଣ୍ଡୀ ବ୍ରାହ୍ମଣୀ କହିଲା ହଉ ତେବେ ରହ । ନେଉଳ ରହିଲା, ସବୁ କାମ କରୁଥାଏ, ସେ ପୁଅକୁ ଯେତେବେଳେ ହଗିଲ ହଏ, ଏ ସେତେବେଳେ କଣ କରେ ପୁଅ ଗାଣ୍ଡିକି କାମୁଡ଼ିଦିଏ ଯେ ପୁଅ କାନ୍ଦେ । କାନ୍ଦେ ଯୋଉଠୁ ନେଉଳଭାଇ କହେ କାହିଁକି କାନ୍ଦୁଚୁ ? ପୁଅ କହେ ତୁ ମତେ କାମୁଡୁଚୁ । ନେଉଳଭାଇ କହେ ମୁଁ ତତେ ଆଉ କାମୁଡ଼ିବି ନାହିଁ, ତୁ କହ ମତେ, ତୋ ମା କେଉଁଠି ଟଙ୍କା ରଖିଛି । ପୁଅ କହିଲା ଚୁଲିମୁଣ୍ଡେ ଯୋଉଠି । ନେଉଳଭାଇ କଣ କରେ ସେଠିରେ ତାକୁ ଖୋଳେ, ସେ ଟଙ୍କାତକ ନିଏ । ଗଣ୍ଡ ବ୍ରାହ୍ମଣୀର ଗୋଟିଏ ବୁଢ଼ୀ ମେଣ୍ଢା ଥାଏ ଯେ ତାକୁ ଗିଳାଉଥାଏ, କାଲେ ହଗି ପକେଇବ ବୋଲି ଗାଣ୍ଡିରେ ଖଣ୍ଡେ ଶୋଲ ମାରି ଦେଇଥାଏ । ସେହିପରି ସବୁଦିନ କରେ । ଗଣ୍ଡୀ ବ୍ରାହ୍ମଣୀର ଯେତେ ଟଙ୍କା ଥିଲା, ସବୁ ତା ପୁଅକୁ ପଚାରି ଖୋଳି ସେ ମେଣ୍ଢାକୁ ଗିଳାଇ ଥାଏ । ଯେଉଁଦିନ ସେ ଛଅ ଭାଇ ଘରକୁ ବାହାରିଲେ, ଏ କହିଲା, ମାଉସି ! ମୁଁ ଯାଉଚି ଘରକୁ, ଗଣ୍ଡୀ ବ୍ରାହ୍ମଣୀ କହିଲା, ତୁ ଏତେଦିନ ଥିଲୁ ମୋ ଘରେ, କଣ ନେବୁ କହ । ନେଉଳ ଭାଇ କହିଲା ମୁଁ

କିଛି ନେବ ନାହିଁ, ମତେ ଏ ବୁଢ଼ୀ ମେଣ୍ଢାଟି ଦିଅ । ବୁଢ଼ୀ ବ୍ରାହ୍ମଣୀ କହିଲା ହଉ ନେ । ନେଉଳଭାଇ ସେହି ବୁଢ଼ୀ ମେଣ୍ଢା ଉପରେ ବସିଲା, ଗଲା । ଏ ଛ ଭାଇ ଯାଉଥାନ୍ତି ଘୋଡ଼ାରେ ଚଢ଼ି, ନେଉଳ ଯାଉଥାଏ ମେଣ୍ଢାରେ ଚଢ଼ି । ଏ ଛ ଭାଇ କହିଲେ କି ରେ ନେଉଳ ଭାଇ ! ଆସିଲୁ କି ? କଣ ଆଣିଚୁ ? ନେଉଳ କହିଲା ମୁଁ ଏହି ବୁଢ଼ୀ ମେଣ୍ଢାଟି ନେଇଚି, ତମେ ସବୁ କଣ ଆଣିଲ ? ଏମାନେ କହିଲେ ଆମେ କିଛି ଆଣିନାହୁଁ । ଏ ଛ ଭାଇ ଘରେ ଆଗରେ ପହଞ୍ଚିଲେ, ନେଉଳର ମା କହିଲା ମୋ ନେଉଳକୁ ଦେଖିଛ ? ଏ ସବୁ ବାଦରେ କହିଲେ, ନାହିଁ ଆମେ ଦେଖି ନାହୁଁ । ଏ ସବୁ ଘରେ ଖାଇପିଇ ଶୋଇଛନ୍ତି, ନେଉଳ ଆସି ଦେଖିଲା, ଡାକିଲା ମାଲୋ ! କବାଟ ଫିଟା । ମା ଧଡ଼ପଡ଼କରି କବାଟ ଫିଟାଇ ଦେଲା, ଏ ବୁଢ଼ୀ ମେଣ୍ଢାଟି ନେଇ ଘରେ ପଶିଲା, ମାକୁ କହିଲା କୁଲାଟାଏ ଆଣିବୁଟି । ଏ କୁଲାଟାଏ ଆଣିଲା । ନେଉଳଭାଇ କଣକଲା ମେଣ୍ଢା ଗଣ୍ଡିରୁ ଚୋଲ ଖଣ୍ଡ ଫିଟାଇ ଦେଲା; ମେଣ୍ଢା ସବୁ ଟଙ୍କାତଳ ଗାଳି ପକାଇଲା । ନେଉଳ ଭାଇ ଗୋଟିଏ ଟଙ୍କା ଚୁପ ମେଣ୍ଢାକୁ ଫେର ଗିଳାଇ ଦେଲା, ଆଉ ଟଙ୍କା ସବୁ ମାକୁ ଦେଲା, କହିଲା ମାଲୋ ମା, ନେ,ଯାକୁ ଗାଡ଼ିଆରେ ଧୋଇଆଣି ରଖି ଦେ । ଏ ଧୋଇଧାଇ ରଖି ଦେଲା, ସକାଳୁ ସେ ଛଭାଇଯାକ କହିଲେ, ହଇରେ ନେଉଳଭାଇ ! ତୁ ଏତେ ଟଙ୍କା କେଉଁଠୁଁ ଆଣିଲୁ ? ନେଉଳ କହିଲା ମୋ ବୁଢ଼ୀ ମେଣ୍ଢା ହଗିଲା । ଏ କହିଲେ ହେ, ଆମକୁ ସେ ମେଣ୍ଢାଟିକ ଦିଅନ୍ତୁ ଟଙ୍କା ନିଅନ୍ତୁ, ନେଉଳଭାଇ କହିଲା, ହଉ ନିଅ, ମତେ ଟଙ୍କା ଦିଅ, ନେଉଳଭାଇ ଟଙ୍କା ଆଣିଲା, ତାଙ୍କୁ ମେଣ୍ଢାଟିକ ଦେଲା । ଏ ନେଇ ସେ ମେଣ୍ଢାକୁ ବାନ୍ଧେଇଲେ, ବାନ୍ଧେଇ ? ମେଣ୍ଢା ଗୋଟିଏ ଟଙ୍କା ହଗିଲା, ଆଉ ହଗିଲା ନାହିଁ, ମରିଗଲା । ଏ ଛଭାଇ କହିଲେ ଭଲ ରହ ନେଉଳ

ଭାଇ ! ତୋ ଘର ଯେବେ ଅମେ ପୋଡ଼ି ନାହୁଁ, ତୁ ଆମକୁ ଠକି ଦେଲୁ ! ନେଉଳଭାଇ ତ ଶୁଣିଥାଏ, ଏ ଘର ପୋଡ଼ିଦେବେ ବୋଲି ସବୁ ଜିନିଷକୁ କୂଅରେ ପକାଇ ଦେଲା । ତୁନିହୋଇ ମା ପୁଅ ଦୁହେଁ ଲୁଚିକରି ଏଆଡ଼େ ରହିଲେ । ଏ ଦୁଇ ଭାଇ କଣ କଲେ ତା ଘରେ ନିଆଁ ଲଗାଇଦେଲେ । ନେଉଳଭାଇ କଣ କରିବ ନିଭେ-ଇବ ପାରିବ ନାହିଁ, ଘର ପୋଡ଼ି ଯେଉଠୁ ଟୁଣ୍ଡ ପଡ଼ିଲା ନିଆଁରେ ପାଣି ପକାଇ ଲିଭାଇଲା । ଅଙ୍ଗାରତକ ବାଛିଲା, ବଳଦଟା ବସ୍ତାଏ ଆଣିଲା, ତାକୁ ସବୁ ତହିଁରେ ପୂରାଇଲା, ବଳଦ ଉପରେ ନଦାଇ, ନେଇ କରି ଗଲା ବିକିବାକୁ । ଯାଉଛି, ତେଣୁ ବଳଦଟା ସାହୁଠା ଅସୁଛନ୍ତି ସର୍କାର ଖଜଣାଟଙ୍କା ନେଇ । ନେଉଳଭାଇକି କହିଲେ, କଁରେ କରେ କଣ ନେଉଚୁ କି ? ନେଉଳ କହିଲା ତମେ କଣ ନେଉଛ ? ଏ ସବୁ କହିଲେ ଅମେ ଟଙ୍କାବଳଦ ନେଉଚୁ । ନେଉଳଭାଇ ମିଛରେ କହିଲା ମୁଁ ସେହି ଟଙ୍କାବଳଦ ନେଉଛି । ନେଉଳ କହିଲା ତମେ କୋଉଠିକି ଯାଉଛ ? ଏ ସବୁ କହିଲେ ଅମେ ସର୍କାରକୁ ଯାଉଚୁ । ରାତି ହେଲା ଯୋଉଠୁ ବଳଦଯାକ କହିଲେ ସମସ୍ତେ ଏକାଠାକୁ ଯିବା, ଏଇଠି ଏକାଠେଇଁ ସମସ୍ତେ ରହିଯିବା । ନେଉଳଭାଇ କହିଲା ହଉ ତେବେ ଭଲହେବ । ସମସ୍ତେ ରହିଲେ, ରୋଷେଇବାସ କଲେ, ଖାଇଲେ ପିଇଲେ ଶୋଇଲେ । ଏ ସବୁଙ୍କୁ ଯେଉଠୁ ନିଦ ଲାଗିଗଲା ନେଉଳଭାଇ ଉଠିଲା, ଯାଙ୍କୁ ସବୁ ଡ଼ାକେ ୨ ମାରିଦେଲା । ଏ ସବୁ କହିଲେ ଅମେ ଥଇଲୁଣି ଯିବୁ ନାହିଁ, ତୁ ନଇଲେ ଆଗରେ ବାହାରି ଯା । ନେଉଳ କଣ କଲା ଅଙ୍ଗାର ପଟକ ସେମାନଙ୍କର ଗୋଟାଏ ବଳଦ ଉପରେ ଲଦିଦେଲା, ଟଙ୍କା ପଟକ ତା ବଳଦ ଉପରେ ଲଦିଲା, ନେଇ କରି ବାହାରି ଆସିଲା । ଘରକୁ ଅସି କବାଟରେ ମାରିଲା, ମା କବାଟ ଫିଟାଇଲା, ମା ପୁଅ ଦୁହେଁ ଟଙ୍କା ପଟକୁ ଧରାଧରି କରି ନେଇ

ଥୋଇଦେଲେ । ନେଉଳଭାଇ ଘରେ ଶୋଇଥାଏ, ଏଣେ ଏ ବଳଦମାନେ ଉଠିଲେ, ପଟ ବଳଦଉପରେ ନଦାଣ୍ଟ ବେଳକୁ ଅଙ୍ଗାର-ପଟ ଭସ୍ମୀଭୂତ ଲାଗିଲା । ଏମାନେ କହିଲେ ଆରେ ଆରେ ଆମକୁ ନେଉଳ ଠକି ଦେଇ ଚଳା । ବାଟଢ଼ାଇ କଷ୍ଟ ହେଲେ ରହିଲେ, ଆଜ ନେଉଳକୁ ପାଇଲେ ନାହିଁ । ରାତି ପାହିଲା, ଏ ଛଅ ଭାଇ ଉଠିଲେ, କହିଲେ, କିରେ ନେଉଳଭାଇ । କଣ ଆଣିଲୁ ? ନେଉଳଭାଇ କହିଲା ଅଙ୍ଗାର ପଟକୁ ଟଙ୍କା ପଟେ ଆଣିଲି । ଏ ଛଅ ଭାଇ କହିଲେ ଆମ ଘର ଆମେ ପୋଡ଼ି ଦେବା କି ଟଙ୍କା ଆଣିବା, ନେଉଳଭାଇ କହିଲା ପୋଡ, ମୁଁ କଣ ତମକୁ ନାହିଁ କରୁଛି ? ଏମାନେ ନିଜ ଘର ସବୁ ପୋଡିଦେଲେ, ଅଙ୍ଗାର ବାନ୍ଧି ଛଅ ପଟ ସଜେଇ କଲେ; ବଳଦ ଉପରେ ଲଦିଲେ, ନେଇକରି ଗଲେ । ନେଉଳଭାଇକି ପଚାରିଲେ ନେଉଳଭାଇ, ତୁ କଣ ଡାକକରି ବିକ୍ରୀ କଲୁ ? ନେଉଳଭାଇ ମିଛରେ କହିଲା, ମୁଁ କହିଲି ଅଙ୍ଗାର ପଟ କିଏ ନେବ ରେ, ଟଙ୍କା ପଟ କିଏ ଦେବ ରେ ? ଏମାନେ ନେଇ ସେଇଥି ଡାକିଲେ । କିଏ କାହିଁକି ଅଙ୍ଗାର ଗୁଡ଼ାକ ନେବ । ଦିଅଣା ଅଣାକର କଏ କେମନ୍ତ କିଣିଲା, ଆଉ କେହି ନେଲେ ନାହିଁ । ଏମାନେ ଚାରି ଛଅ ଦିନ ରହି ଫେରି ଆସିଲେ । ନେଉଳଭାଇ କୋଠା ତୋଳି ଦେଇଛି ତୋଳି ବସିଛି । ଏ ଛଅ ଭାଇଯାକ କହିଲେ ରହ ରହ, ଆଜି ନେଉଳଭାଇକି ପଟରେ ସିଲେଇ କରି ପାଣିକି ପକେଇ-ଦେବା ଯେ ଏକାନଟକେ ଯିବ । ନେଉଳକୁ ଡାକି ନେଲେ, ଗୋଟାଏ ପଟ ଆଣିଲେ, କହିଲେ ଏଥିରେ ପଶିଲୁ, ଦେଖିବୁ କେତେ ଧାନ ସମେଇବ ? ନେଉଳ ପଶିଲା, ଏମାନେ କଣ କଲେ, ନେଉଳଭାଇ ଯୋଉଠୁ ପଶିଗଲା, ପଟକୁ ସିଲେଇ କରିଦେଲେ, ନଈକି ଫୋପାଡ଼ି ଦେଲେ । ସେଠାରେ ଗୋଟିଏ ଗଉଡ଼ ଗାଈ ଜଗଥାଏ, ତାକୁ

ଡାକି ନେଉଳଭାଇ କହିଲା, ହେ ମୋତେ ମୋ ଭାଇମାନେ ବଭା କରିବାକୁ ନେଇ ଯାଉଛନ୍ତି, ମୁଁ ଅଇଟୁକା ବଭା ହେବନାହିଁ । ତୁ ମତେ ଏଥିରୁ ବାହାର କରି ଦେ, ତୁ ପଶ ଯେ ତୁ ବଭା ହେବୁ । ଗଉଡ଼ ଅନ୍ୟ ଏତେ କଥା ଜାଣିଚ, ଗଉଡ଼ ବାହାର କରିଦେଲା ନେଉଳଭାଇକି, ସେଥିରେ ଜଣେ ପଶିଲା । ନେଉଳ କଣ କଲା ଗଉଡ଼କୁ ନଈକି ଫୋପାଡ଼ି ଦେଲା, ତାର ଗାଈ ପଲକ ଘିଚିଲା, ଘରକୁ ଆସିଲା । ଏ ଛଅ ଭାଇଯାକ ଦେଖି କାବା ହୋଇଗଲେ, ପଚାରିଲେ, ହଇରେ ତୁ ଏ ଗାଈ କୋଉଠୁ ଆଣିଲୁ ? ନେଉଳଭାଇ କହିଲା, ତେମେତ ମତେ ପାଖରେ ପକାଇଦେଇ ଆସିଲ, ବହୁତ ଦୂରରେ ପକାଇ ଦେଇଥିଲେ ବେଶି ଗାଈ ଆଣିଥାନ୍ତି । ଏମାନେ କହିଲେ ହେ ନେଉଳଭାଇ ! ଆମକୁ ତୁ ପଟରେ ପୂରାଇ ନଈକି ଫୋପାଡ଼ି ଦେଉନୁ ; ନେଉଳଭାଇ କହିଲା ହଉ ପଶ, ମୁଁ କଣ ମନା କରୁଚି ? ଏ ଛଅ ଭାଇ ଛ'ଟା ପଟରେ ପଶିଲେ, ନେଉଳଭାଇ ପଟମୁହ ସିଲେଇ କରିଦେଲା, ନଈରେ ଖୁବ୍ ଦୂରରେ ଫୋପାଡ଼ି ଦେଲା । ଆଉ ଏ ଛ ମା ଯାକଙ୍କୁ ନେଇ ଘରେ ରଖିଲା, ବାହା ହେଲା, ଘର ଦୁଆର କଲା ଖୁବ୍ ସୁଖରେ ରହିଲା, ମୁଁ ଚଲାରୁ କଥା ନ କହିଲା । ମୋ କଥାଟି ସରିଲା ଇତ୍ୟାଦି ।

# ଅନନ୍ତା କଥା ।

ଗୋଟିଏ ଚଷା ଘରେ ମା, ବାପ, ପୁଅ ଝିଅ ଚାରିଗୋଟି ଲୋକ ଥାନ୍ତି । ଝିଅଟି ବାହା ହୋଇଗଲା ଗୋଟିଏ ଖୁବ୍ ଧନବନ୍ତ ଘରେ, ବାପଟି ମରିଗଲା । ଏ ମା ପୁଅ ଦୁହେଁ ଭାରି କଷ୍ଟରେ ଥାନ୍ତି, ଲୋକଙ୍କ ଘର ଘେର ମୂଲ ଲାଗି ଚଳନ୍ତି । ପୁଅଟି ନାଁ ଅନନ୍ତା । ଭଉଣୀଘରେ ବାହା-ଘର ହେଉଥିଲା, ଅନନ୍ତା କହିଲା, ମା ! ନାନୀଘରେ ବାହାଘର ହେଉଛି, ମୁଁ ଯାନ୍ତି ଦେଖିବାକୁ ? ମା କହିଲା ହେଉ ଯା । ଅନନ୍ତା ଗଲା ଭଉଣୀ ଘରକୁ, ଯାଇ ସନ୍ଧ୍ୟାବେଳେ ପହଞ୍ଚିଲା । ଭଣେଇ ଦେଖିଲା, କହିଲା ଅନନ୍ତ ଆସିଛ କି ? ହଉ ତେବେ ଏ ଖଲପତ୍ର ଦାଣ୍ଡ ପିଣ୍ଡିରେ ବସ, ଏହା କହି ହେବାରୁ ପତର ଦେଇଗଲା ଖଲ ପିଇଁବାକୁ । ଅନନ୍ତା ଖଲପତ୍ର ପିଇଁ ପିଇଁ ରାତି ପାହାନ୍ତାଥା ହେଲା, ସମସ୍ତେ ଖାଇପିଇ ଶୋଇ-ଲେଣି, ଭଉଣୀର ମନେ ପଡ଼ିଲା ଅନନ୍ତାତ ଆସିଚି ଖାଇ ନାହିଁ ! ଏହା କହି ହାଣ୍ଡିଶାଳରେ ହାଣ୍ଡି ଦେଖିଲାବେଳକୁ ହାଣ୍ଡିରେ କିଛି ନାହିଁ, ପେଜମିଶା ହୋଇ ଭାତ ଗଣ୍ଡିଏ ରହିଚି । ଡାକିଲା, ଅନନ୍ତା ! ପେଜ ପିଇବୁ ? ଅନନ୍ତା କହିଲା ନାହିଁ ନାନୀ, କାଲି ସକାଳଯାଏ, ରାତିପାହି-ଗଲାଣି କାଲି ସକାଳେ ଖାଇବି । ଭଉଣୀ ଫେରିଗଲା ଘରକୁ । କେତେ ସମୟ ପରେ ରାତି ପାହିଲା । ଭଣେଇ ଘରୁ ଉଠି ଆସି ଦେଖେ ଯେ ଅନନ୍ତା ପିଣ୍ଡାରେ ବସିଛି, କହିଲା ଅନନ୍ତ ! ଏ ଦାଆଖଣ୍ଡି ନେବଟି, ଘୋଡ଼ାପାଇଁ ଘାସ କେତେଟିଏ ଆଣିବ, ଅନନ୍ତା ଦାଆକୁ ଆଣିକି, ଆସିଲା । ମନେ ମନେ ଭାବିଲା, ମୁଁ ଯିନା ଦୁଃଖୀଟିଏ ବୋଲି ମତେ ଏମନ୍ତ କହୁଛନ୍ତି

ବାଡ଼ରେ ହାଥିକୁ ପୋପାଡ଼ି ଦେଲା, ଅପଣା ଘରକୁ ଫେରି ଅସିଲା । ଆସନ୍ତା, ବାଡ଼ରେ ଗୋଟାଏ ମଲା ନାଗସାପ ଦେଖିଲା, କହିଲା ବଞ୍ଚିଲୁ ବୋଲି ସିନା ଏତେ ଅପମାନ, ଯାଉଛି ଏ ମଲା ସାପକୁ ନେଇ ସିଝେଇ କରି ଖାଇବି ସେ ମରିବି । ଏହା କହି ସାପଟି ନେଇ ଘରକୁ ଅସିଲା, ମାକୁ କହିଲା, ମା ! ଏହାକୁ ସିଝା, ଖାଇବା । ମା ସାପକୁ ହାଣ୍ଡିକୁଣ୍ଡି ରାନ୍ଧି ରଖିଲା । ଅନନ୍ତା ଗାଧୋଇ ଅସିଲା, ମା ଗଲା ଅନନ୍ତାକୁ ଖାଇବାକୁ ଦେବାକୁ । ହାଣ୍ଡି ଦେଖିଲାବେଳକୁ ସାପସିଝା ନାହିଁ । ସୁନା ମୁଣ୍ଡା ମୁଣ୍ଡା ହୋଇ ହାଣ୍ଡିରେ ରହିଛି । ମା ଦେଖି ହାବାହୋଇ ଗଲା, ପୁଅକୁ ଦେଖାଇଲା । ପୁଅ କହିଲା ମା ଆମ କପାଳ ଫିଟିଲା । ମା ସବୁ ସୁନାଯାକ ରଖିଦେଲା । ଅନନ୍ତା ସେଥିରୁ ଖଣ୍ଡେ ନେଇ ଗଲା, ହାଟରେ ଦରକାର ସବୁ ସରଞ୍ଜାମ ଆଣିଲା । ମା ପୁଅ ଦିହେଁ ଖାଇ ପିଇ ସୁଖରେ ରହିଲେ । ଅନନ୍ତା ଖୁବ୍ ଘରଦ୍ୱାର କଲା । ଗୋଟାଏ ହାତୀ କିଣିଲା, ଭଉଣୀପାଇଁ ସାତେ ଅଳଙ୍କାର କଲା, ହଟା ସୁନାମୁଦ ରୁପାମୁଦ ତା ପାଇଁ ଗଢ଼ାଇଲା । ଯୋଡ଼ାଏ ଘଣ୍ଟି ଗଢ଼ାଇଲା, ଗୋଟାଏ ଘଣ୍ଟି କହୁଥାଏ, 'ଅନନ୍ତା ପେଜ ପିଇବୁ ଅ' ଆଉ ଗୋଟାଏ କହେ 'ନାହିଁ ନାହିଁ କାଲି ସକାଳ ଯାଏ' । ଏହିପରି ସବୁକରି ସାରିଲା । ମାକୁ କହିଲା ମା ମୁଁ ଯାଉଛି ନାନାଘରକୁ । ଅନନ୍ତା ହାତୀ ଉପରେ ବସି, ଅଳଙ୍କାରପେଡ଼ି ସାଙ୍ଗରେ ନେଲା, ସୁନାମୁଦ ରୁପା ମୁଦ ନେଲା, ଘଣ୍ଟି ହଟା ନେଲା, ଗଲା ଭଉଣୀ ଘରକୁ । ଗାଁ ମୁଣ୍ଡରେ ହେଲାରୁ ସେ ଘଣ୍ଟି ଯୋଡ଼ିକ ହାତୀବେକରେ ପକାଇଦେଲା । ଗୋଟାଏଘଣ୍ଟି କହୁଥାଏ 'ଅନନ୍ତା ପେଜ ପିଇବୁ ଅ' ଆଉ ଗୋଟାଏ କହୁଥାଏ 'ନାହିଁ ନାହିଁ କାଲି ସକାଳ ଯାଏ' ଏହିପରି ସେ ଘଣ୍ଟି ଯୋଡ଼ାକ ବାଜୁଥାଏ ॥ ଗାଁ ଲୋକେ ଶୁଣି କହିଲେ, ଭଉଣୀ ଭାଇକି ଏହା କହିଥିଲା ବୋଲି ପରା ଭାଇ ଏପରି ଘଣ୍ଟି ବଜାଇ ଆସୁଛି । ଅନନ୍ତ ଭଉଣୀ ଦୁଆରେ

ପହଞ୍ଚିଲା ବେଳକୁ କିଏ ପାଣିଗୋଟା ଧରି ଛିଡ଼ା ହୋଇଛି, କିଏ ହାତଧରି ନେବାକୁ ବସିଛି, କିଏ ବନ୍ଦଣା କରି ଦେଉଛି, ଏହିପରି ସବୁ ହାଜର ଅଛନ୍ତି । ଗୋଡ଼ ଧୋଇ ଘର ଭିତରକୁ ଗଲାବେଳକୁ ଘରେ ଭାତ ବଢ଼ା ହୋଇଛି, ଭଉଣୀ ଠିଆ ହୋଇଛି । ଅନନ୍ତା ଅଳଙ୍କାର ଯେଉଁଠି ଭଉଣୀ ଆଗରେ ଥୋଇଦେଲା, ଠା ପାଖକୁ ଯାଇ ବସିଲା, କହିଲା ଆଉଥରେ ଆସିଥିଲି ଯେ ଘଣୋଇ କହିଲା ଖାଲିପଡ଼ି ସିଇଁ ! ଭଉଣୀ କହିଲା ଟପଜ ପିଇବୁ ଅ ! ଏଥର ସିନା ଧନଦରବ ଆଣିଛି ବୋଲି ଏତେ ଆଦର, ଏହାକହି ସୁନାମୁଦି ରୁପାମୁଦିକି ଭିତରେ ପୋତିଦେଲା କହିଲା 'ଭୁଞ୍ଜ ସୁନା ଭୁଞ୍ଜ ରୁପା' ମୁଁ ଖାଇବି ନାହିଁ । ଏହା କହି ଥାଳୀ ପାଖରୁ ଉଠି ଆସିଲା, ଭଉଣୀକି କହିଲା ତୁ ଏ ଆଡ଼େ ମୁଁ ସେ ଆଡ଼େ; ଏହା କହି ହାତୀରେ ଚଢ଼ି ବାହାରି ଆସିଲା, ଘରେ ପହଞ୍ଚି ସୁଖରେ ଘରଦୁଆର କଲା, ଭଉଣୀଙ୍କ ଆଉ ପଚାରିଲା ନାହିଁ, ମୁଁ ଗଲାକୁ ମଧ୍ୟ କଥା କହିଲା ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।

## କାଞ୍ଚନବତୀ କଥା

ଗୋଟିଏ ସାଧବଟିଏ ତାର ସାତ ପୁଅ ସାତ ବୋହୂ, କାଞ୍ଚନବତୀ ବୋଲି ଗୋଟିଏ ଝିଅ । ଦିନକର ଭାଇମାନେ ମା'କୁ କହିଲେ, ଆଜି କାଞ୍ଚନବତୀ ଶାଗ ଖରଡ଼ୁ । ମା କହିଲା ହଉ, କାଞ୍ଚନବତୀକି ଶାଗ ଗୁଡ଼ିଏ ଦେଲା । କହିଲା ଯା ଖରଡ଼ିବୁ, ଭାଇମାନେ କହିଛନ୍ତି ଖାଇବାକୁ । ସେ ଗଲା ଶାଗ ଧୋଇ ଆଣି ବାଛି କାଟିଲା, ସୁନ୍ଦର କରି ଖରଡ଼ିଲା ।

ସବୁ ଭାଇମାନଙ୍କୁ, ମାଙ୍କୁ, ବାପକୁ ଖାଇବାକୁ ଦେଲା, ସମସ୍ତେ କହିଲେ ଆଜ ଶାଗ ଭଲ ହୋଇଛି, ସାନବୋହୂ କାହିଁକି ଏମନ୍ତ ଅବର୍ଜ୍ୟା କର ଛରଡ଼େ? ଏହାପରେ ସାନବୋହୂକୁ ସମସ୍ତେ ନିନ୍ଦା କଲେ । ସାନବୋହୂ ଆଉ କିଛି କହିଲା ନାହିଁ, ରାତିରେ ଯେତେବେଳେ ତାର ସ୍ୱାମୀ ସଙ୍ଗେ ଦେଖା ହେଲା, ଖାଲି କାନ୍ଦିଲା । ସ୍ୱାମୀ ଯେତେ ପଚାରୁଥାଏ କିଛି କହୁ ନ ଥାଏ, କେତେବେଳ ପରେ କହିଲା, ତେବେ ସତ୍ୟ କର ମୁଁ କହିବି । ସେ ସତ୍ୟ କଲା, ସେଉଠୁ ତା ଭାରିଜା କହିଲା—କାଞ୍ଚନବତୀ ଯୋଗୁଁ ମୋର ଆଜି ଏତେ ନିନ୍ଦା, ସେ ଯେବେ ଆଜି ଏ ଘରୁ ଯିବ ମୁଁ ତ ଭାତ ଖାଇବି, ନଇଲେ କେବେହେଁ ଭାତ ଖାଇବି ନାହିଁ । ତାର ବର କହିଲା ହଉ, କାଲି ତାକୁ ନେଇ ମାରିପକାଇବି ।

ତହିଁ ଆରଦିନ ସକାଳୁ ସାନଭାଇ କଣ କଲା ଦାଣ୍ଡଦୁଆରୁ ଆଇଲା, କହିଲା ବୋଉ, କାଞ୍ଚନବତୀର ଶଶୁର କହିଛି କାଞ୍ଚନବତୀକୁ ପଠାଇ ଦେବାକୁ । ମା ଭାର ସଜିଲ କଲା, ସାନ ଭାଇ ସାଙ୍ଗରେ ଝିଅଙ୍କୁ ଶାଶୁଘରକୁ ପଠାଇଦେଲା । କାଞ୍ଚନବତୀ ଆଉ ତା ଭାଇ ଯାଉଛନ୍ତି, ବାଟରେ ଗୋଟିଏ ଗାଁ ପାଖରେ କାଞ୍ଚନବତୀକୁ ତା ଭାଇ କହିଲା, ତୁ ଏଇଠି ବସିଥା, ମୁଁ ଗାଁ ଭିତରୁ ପାଣି ପିଇ ଆସେ । ଏହା କହିଲା, ଗଲା ସେ ସେ ଆଉ କେତେବେଳଯାଏ ରହିଲା । ଯେ ଯାଉଥାଏ ବାଟରେ କାଞ୍ଚନବତୀ ତାକୁ ପଚାରୁଥାଏ ମୋ ଭାଇକି ଦେଖିଛକି ? ସମସ୍ତେ ନାହିଁ କରୁଥାନ୍ତି, କେତେବେଳେକେ ତାର ଭାଇ ତେଣୁ ଗୋଟାଏ ପଟାଣର ପୋଷାକ ପିନ୍ଧି ଖଣ୍ଡା ପଟେ ହାତରେ ଧରି ପିକାଟାଏ ଖାଇଖାଇକା ଆସିଲା, କାଞ୍ଚନବତୀକି ହାଣି ପକାଇଲା । କାଞ୍ଚନବତୀ ସେଇଠି ଗୋଟିଏ ଅଛି ସୁନ୍ଦର କାଞ୍ଚନଗଛ ହୋଇ ରହିଲା । ତହିଁର କେତେଦିନକେ କାଞ୍ଚନବତୀର ଶଶୁର କାଞ୍ଚନବତୀକି ନେବାକୁ ଆସି ବାଟରେ ସେହି କାଞ୍ଚନଗଛମୂଳେ ବସିଲା । ଶଶୁର ସାଙ୍ଗେ

ଯେଉଁ ବାଉକ ଥିଲା ସେ ଗଛରେ କିମ୍ଭୁତର ଫୁଲଗୁଡ଼ାଏ ଫୁଟିଚ ଦେଖି ଫୁଲଟିଏ ତୋଳିବାକୁ ଯେମନ୍ତ ହାତ ବଢ଼ାଇଚ, ସେ କଞ୍ଚନଗଛରୁ କଞ୍ଚନବତୀ କହିଲା, ଥିର ୨ କରି ତୋଳ ହେ ବାଉକ, ଗଛରୁ ପଥର ଝୁଟେଇଟି, ମୋର ସାନ ଭାଇ ଖଣ୍ଡାରେ ହାଣିଛ ତହିଁକି ମୋ ଦେହ ଥରେଟି । ଗଛଭିତରୁ ଏମନ୍ତ ଶବଦ ବାହାରୁଚ ଶୁଣି ସମସ୍ତେ କାବା ହୋଇଗଲେ ! କାଞ୍ଚନବତୀ ଶଶୁର ଫେର ବେଢ଼ିବାପାଇଁ ଗଛକୁ ଫୁଲ ତୋଳିବାକୁ ହାତ ବଢ଼ାଇଲା; ସେ ଗଛରୁ ସେହିପରି ଶବଦ ହେଲା- ଥିର ୨ କରି ତୋଳ ହେ ଶଶୁର ଗଛରୁ ପଥର ଝୁଟେଇଟି; ମୋର ସାନଭାଇ ଖଣ୍ଡାରେ ହାଣିଛ ତହିଁକି ମୋ ଦେହ ଥରେଟି । ଶଶୁର ମନରେ କେତେ ହେଦୋପାଞ୍ଚ କଲା, ଗଲା ତା ଘରକୁ ବୋହୂ ଆଣି-ବାକୁ । ଶଶୁର ଆସି କହିଲା ମୋ ବୋହୂକୁ ପଠାଅ, କାଞ୍ଚନବତୀର ବାପ ମା ଭାଇମାନେ ସମସ୍ତେ କହିଲେ ଆମେ ଝିଅକୁ ତ କୋଉଦିନ ଛାଡ଼ି ଅସିଲୁଣି, ତମେ ଆଜ ବୋହୂପାଇଁ କଣ ଆସିଛ ? ଶଶୁର କହିଲା ହଉ ତେବେ ଏ ଗଛ କେଲକୁ ଆସିଲ, ଏ ଗଛ କଣ କହୁଛ ? ସମସ୍ତେ ଗଲେ, ବଡ ଭାଇ, ବଡ ଭାଉଜ, ବାପ, ମା, ମାନ ଭାଇ, ସାନ ଭାଉଜ ଗଲେ ନାହିଁ । ଆଗେ ବାପ ଗଲା ଫୁଲ ତୋଳିବାକୁ, ଗଛ କହିଲା, ଥିର ୨ କରି ତୋଳ ହେ ବାପା, ଗଛରୁ ପଥର ଝୁଟେଇଟି; ତମ ମାନ ପୁଅ ଖଣ୍ଡାରେ ହାଣିଛ ତହିଁକି ମୋ ଦେହ ଥରେଟି । ମା, ଆଉ ଭାଇମାନେ ସେହିପରି ଗଲେ, ସେମାନଙ୍କୁ ବି ସେହିପରି କହିଲା । ଜାଣି ପାରିଲେ ଯେ ସାନ ଭାଇ କାଞ୍ଚନବତୀକୁ ସେଠାରେ ମାରି ପକାଇଛି । ମା, ବାପ, ଶଶୁର, ଭାଇ, ଭାଉଜ ସମସ୍ତେ ବସି ସେଠାରେ କାନ୍ଦିଲେ । ରାତି ଯାଏ କାନ୍ଦୁଥାନ୍ତି, ରାତି ଅଧହେଲାଣି, ଈଶ୍ୱର ପାର୍ବତୀ ଉଡ଼ି ଯାଉଛନ୍ତି, ଏମାନଙ୍କ କାନ୍ଦଣା ଶୁଣି ସେଠାକୁ ଆସିଲେ । ଏମାନଙ୍କୁ ପଚାରିଲେ, ତମେ ସବୁ କିଏ ? ଭୂତ ନା ପ୍ରେତ ? କାହିଁକି କାନ୍ଦୁଚ ? ଏମାନେ କହିଲେ, ଆମ୍ଭେମାନେ କେହି ନୋହୁ

ଏହି ମଝିର ଲୋକ, ଆମର ଗୋଟିଏ ଝିଅ ମରି ଗଲା ବୋଲଛି, ଆମେ ତାରପାଇଁ କାନ୍ଦୁଚୁଁ । ଇଷ୍ଟବନ୍ଧୁ କହିଲେ ହଉ, ତେଣିକି ମୁହଁବୁଲା-ଏମାନେ ସେ ଅଡ଼ିଆ ମୁହଁ କରି ବସିଲେ । ଈଶ୍ୱର କଣକଲେ, ଫୁଲ ପାଣି କରି ଜନମୂଠା ଛୁଞ୍ଚିଦେଲେ ଯେ କାଞ୍ଚନବତୀ ଜୀଇ ଉଠିଲା । ଶଶୁର ବୋହୂକୁ ଘରକୁ ନେଇଗଲା । ଭାଇ, ଭାଉଜ, ମା, ବାପ ଘରକୁ ଆସିଲେ, ଗୋଟାଏ ଖଣି ଖୋଳଲେ, ସାନ ପୁଅ, ସାନ ବୋହୂକୁ ସେଥିରେ ପେଲିଦେଲେ; ତଳକଣ୍ଟା ଉପରକଣ୍ଟା ପୁଷ୍ଟିଦେଲେ । ନିଶ୍ଚି-ନ୍ତରେ ଘରଦୁଆର କଲେ । ମୁଁ ଗଲ୍ଲକୁ କଥା ନ କହିଲେ । ମୋ କଥାଟି ସରିଲା ଇତ୍ୟାଦି ।

## ଟକ୍‌ମକ୍ ପାଣି ଚଳନ୍ତି ବାଜା କଥା ।

ଗୋଟିଏ ରଜା ଥିଏ, ତାର ସାତ ଭାରିଯା । ରଜା ବନକୁ ପାରଧିକି ଯାଉଥିଲେ, ପାତ୍ରମନ୍ତ୍ରୀ ସମସ୍ତଙ୍କି ସାଙ୍ଗରେ ନେଇ ଯାଇଥିଲେ । ଅସୁ-ରୁଣୀ ସାତ ଭଉଣୀ ଯେ, ସାତ ଭଉଣୀଯାକ କଳକଳଜ୍ଞ କରି ସବା ସାନ ଭଉଣୀକି ଚଢ଼ି ଦେଇଥିଲେ ଯେ ସେ ଆସି ଗୋଟାଏ ଗଛରେ ଚଢ଼ି କାନ୍ଦୁଥିଲା ବନସ୍ତରେ, ରଜାଙ୍କ ଉପରେ ଲୁହ ପଡ଼ିଲା । ରଜା କହିଲେ ଗୁଣୁଆଣିଆଙ୍କୁ, ଗୁଣିବୁଢ଼ା, ଆମ ସରସା କି ଚମ ସରସା ? ଗୁଣୁ-ଣିଆ ଗୁଣିଲା, କହିଲା ଆପଣଙ୍କ ସରସା ହେବ । ରଜା କହିଲେ, ମନ୍ତ୍ରୀଙ୍କି ଯାଅ, ହାତ ଧରିକରି ଆଣ । ମନ୍ତ୍ରୀ ଗଲେ, ହାତଧରିକରି ଆଣିଲେ, ରଜାଙ୍କ ପାଖରେ ଠିଆ କରିଦେଲେ । ରଜା ଅସୁରୁଣୀ କି ପଚାରିଲେ ତୁ କିଏ ? ଏଠାକୁ କାହିଁକି ଆସିଚୁ ? ଅସୁରୁଣୀ ରଜାଙ୍କୁ ଦେଖି ଖୁବ୍

ସୁନ୍ଦର ମୋହିନୀବେଶ ଧରିଲା ରାଜା ଯେପରି ଭୁଲିଯିବେ, ମିଷ୍ଟରେ କହିଲା ମୁଁ ପରଦେଶ ରାଜାର ଝିଅ, ବାଟ ନ ପାଇ ଏଥାକୁ ଆସିଲିବାହାର, ରାଜା କହିଲେ ଭଲ ହେଲା, ତେବେ ତେମେ ଆମର ପାଟରାଣୀ ହେବ, ରାଜା ତାକୁ ସୁଖରେ ବସାଇଲେ, ନେଇକରି ଗଲେ । ଲୋକେ ସବୁ କହିଲେ, ରାଜା ପାରଧିକି ଯାଇଥିଲେ, କୋଉଠିଏ ନୂଆ ରାଣୀ ଆଣି ଚନ୍ତି, ଏହିପରି କହିଲେ, ଦେଖିକରି ଗଲେ । ରାଜା ଯାକୁ ଆଣି ଘରେ ରଖି ରଙ୍ଗା ଦେଲେ । ସେ ଶ୍ରୀରଦନ ଗଲା, ସପତ୍ନୀଙ୍କୁ ଯେତେ ଲେଖା ଭାତ ଦେଉଥନ୍ତି ତାକୁ ସେତିକି ଦେଉଥନ୍ତି । ଏତ ଅସୁରୁଣୀଟାଏ, ଏତା ପେଟ ପୂରୁଛି କୋଉଠି ? ଏ କଣ କଲେ ରାତିଅଧରେ ସମସ୍ତେ ଯେତେ ଶୋଇପଡ଼ନ୍ତି, ଯାଏ ହାତୀଶାଳକୁ, ହାତୀ ଟୋକାଏ ଗିଳେ; ଅସେ। କୋଉଦିନ ଘୋଡ଼ା, କୋଉଦିନ ଗାଈ; ଏହିପରି ଟୋକାଏ ଗିଳେ । ଏମନ୍ତ କରୁ କରୁ ଘୋଡ଼ା, ଗାଈ, ହାତୀ ସବୁ ଊଣା ହୋଇଗଲେ । କେହି କଛି ବୁଝି ପାରନ୍ତି ନାହିଁ, ରାଜା ଖାଲି ଗଉଡ଼ଙ୍କୁ ମାରନ୍ତି, ଆମର ଗାଈ, ଗୋରୁ, ହାତୀ, ଘୋଡ଼ା କଣ କରୁଛ ବୋଲି । ରାଜାଙ୍କର ଆର ସାତ ଭାରିଯାଯାକ ଜାଣିଥାନ୍ତି ସାନରାଣୀ ଖାଉଛି ବୋଲି, ଧରେଇ ଦେଇ ପାରୁ ନ ଥାନ୍ତି ବୋଲି କଛି ଆଉ କହୁ ନ ଥାନ୍ତି । ଏମାନେ ହନେ ଶିଖାଶିଖି ହେଲେ, କହିଲେ ଚାଲ ଆମେ ଗୁହାଳରେ ଲୁଚି-ଥିବା, ଏ କେମନ୍ତ ଖାଇବ ଦେଖିବା । ଏ ଯାଇ ଲୁଚିଛନ୍ତି ଗୁହାଳ କଣରେ, ଅସୁରୁଣୀ ଗଲା ଗୁହାଳକୁ, ଏଣିକି ତେଣିକି ଅନାଇ ଟୋକାଏ ଗାଈ ଫିଟାଇ ଖାଇଗଲା । ଖାଇସାରି ବାହାରିଗଲାବେଳକୁ ଅସୁରୁଣୀର ଏମାନଙ୍କ ଉପରେ ନଜର ପଡ଼ିଗଲା; ଅଗବଢ଼ାପଡ଼ ଦଉଡ଼ି ଆସି ରାଜାଙ୍କୁ କହିଲା ଦେଖିଲଣି ତେମେ ଉଡ଼ିହେରଙ୍କୁ କଣ ମାରୁଛ, ଆମର ତ ଏହିମାନେ ଗୋରୁ ଗାଈ ଖାଇଯାଉଛନ୍ତି । ରାଜା ଦେଖିଲେ, କହିଲେ ସତେ, ଏହିମାନେ ତ ଖାଉଛନ୍ତି । ଏମାନେ ଯେତେ ମନା କଲେ, ରାଜା ଜମା ମାନିଲେ ନାହିଁ; କହିଲେ ଏମାନଙ୍କୁ

କଣ ଦଣ୍ଡ ହଅହେବ ? ଅସୁରୁଣୀ କହିଲା ଖୁବ୍ ବଡ଼ ଗୋଟାଏ ଟୋପର ଖୋଳାଅ, ସେଇଥି ଭିତରେ ଏମାନଙ୍କୁ ପକାଇ ଦିଅ, ଆଉ ଏମାନଙ୍କ ଆଖି ଖୋଳି ରଖ ଯେ ସେଇଥି ଭିତରେ ପଡ଼ି କୁଥଡ଼େ ଯାଇ ନ ପାରି ମରିଯିବେ । ରାଜା କହିଲେ ହଉ, ଖୁବ୍ ବଡ଼ଟୋପର-ଟାଏ ଖୋଳାଇଦେଲା, ଏମାନଙ୍କ ଆଖି ଖୋଳି ରଖି ସେଇଥି ଭିତରେ ପକାଇଦେଲେ, ଟୋପର ଉପରେ ପଟା ପକାଇ ଦେଇ ମାଟି ଘୋଡ଼ାଇ ଦେଲେ । ଏ ସାତ ସଉତୁଣୀଯାକ ଗର୍ଭ ହୋଇ ଥାନ୍ତି, ସେ ଟୋପରରେ ପଡ଼ି କେତେଦିନ କଷ୍ଟ ସହିଲେ; ଆଗେ ହୋଇ ବଡ ସଉତୁଣୀର ପୁଅ-ଟିଏ ହେଲା । ସାନ ସଉତୁଣୀକି ଛାଡ଼ି ଆଉ ପାଞ୍ଚ ସଉତୁଣୀ କହିଲେ ଦେ ଅଣ ତୋ ପୁଅକୁ, ସମସ୍ତେ ବାଣ୍ଟି କୁଣ୍ଟି ଖାଇ ପେଟଜାଳାନିବା-ରଣ କରିବା, ତୋର ଅମ ଖାଇଥିବୁ, ଆମର ହେଲେ ତୁ ଖାଇବୁ ସାନ ସଉତୁଣୀ ଅନ୍ୟ କିଛି କହିଲା ନାହିଁ । ବଡ଼ ସଉତୁଣୀ କହିଲା ହଉ, ପୁଅକୁ ସାତଖଣ୍ଡ କରିଦେଲା, ନିଜେ ଖଣ୍ଡେ ଖାଇଲା, ଆଉ ଛଖଣ୍ଡ ଛ'ଜଣଙ୍କୁ ବାଣ୍ଟି ଦେଲା । ଏ ପାଞ୍ଚ ସଉତୁଣୀ ଖାଇଲେ, ସାନ ସଉତୁଣୀ ଆଉ ଖାଇଲା ନାହିଁ, ରଖିଦେଇ ଥାଏ । ଏହିପରି ଛ ସଉତୁଣୀଙ୍କର ପୁଅ ହେଲା, ସମସ୍ତେ ମାରିକରି ଖାଇ ଦେଲେ ବାଣ୍ଟି କୁଣ୍ଟି କରି, ଆଉ ସାନ ସଉତୁଣୀ ରଖିଥାଏ, ଖାଇ ନ ଥାଏ । ତାର ଯେତେବେଳେ ପୁଅ ହେଲା, ଏ ସବୁ ଲଗାଇଲେ ତୋର ପୁଅକୁ ଦେ ଖାଇବୁଁ, ଏ କହିଲା ତମର ଯାହାକୁ ସବୁ ଦେଇଛ, ତାକୁ ନଅ ମୁଁ ରଖିଛି, ମୋ ପୁଅକୁ କେହି ଖାଅନା । ଏହିପରି କହି ପୁଅଟିକୁ ରଖିଲା । ସମସ୍ତେ ସେ ପୁଅଟିକୁ ଶରଧା କଲେ, ଆଦର କରି ଦୁଧ ଦେଲେ (୧) ରଖିଲେ ଏ ପୁଅଟିଙ୍କ ଯୋଗୁଁ ଦଶ ବାର ବରଷ ହୋଇଗଲା, ସେ କହିଲା ତେମେ ସବୁ ଏଠେଇଁ କାହିଁକି ପଡ଼ିଛ କହ,

(୧) ସ୍ତନ୍ୟପାନ କରାଇଲେ ।

ଏମାନେ ସବୁ କହିଲେ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ, ପୁଅ କହିଲା, ତମମାନଙ୍କ ଦୁଃଖ ଫେଡିବି, ତେମେମାନେ ମତେ ଉପରକୁ ଉଠାଇ ଦିଅ । ଏମାନେ ଅସୁରୁଣୀ ଭୟରେ ନାହିଁ କରୁଅଛନ୍ତି । ପୁଅ ଏକଜିଦ୍ ଲଗାଇଲା ଯୋଉଠୁଁ ଏମାନେ କଣ କଲେ, ଡାଳପତରେ ଡାଳପତରେ ହୋଇ ଠିଆ ହେଲେ, ପୁଅକୁ ଉପରକୁ ଉଠାଇ ଦେଲେ । ପୁଅ ଆସିଲା ଉପରକୁ, ସବୁ ଶୁକର ମାନଙ୍କୁ ପଚାରିଲା ରାଣୀଙ୍କ ଡିଅସ କେଉଁଠି ? ସମସ୍ତେ ରାଣୀଙ୍କ ଡିଅସ ଦେଖାଇ ଦେଲେ । ଏ ଯାଇ ଦଣ୍ଡବତ କଲା ଅସୁରୁଣୀକି, କହିଲା ମୋ ମା ମାନଙ୍କ ଆଖି ଦିଅ । ଏ କହିଲା ମୁଁ ଆଖି ଦେଖି ନାହିଁ । ଏ ସେଇଠୁ ରାଜାଙ୍କ ପାଖକୁ ଗଲା, ଦଣ୍ଡବତ କଲା । ଯାକୁ ଯାଇଁ ରାଜା ଜାଣିଲେ ଯେଉଁ ମାନଙ୍କୁ ଗାଡିରେ ପକାଇଛନ୍ତି, ତାଙ୍କରମାନଙ୍କ ପୁଅ ବୋଲି; ରାଜା କହିଲେ ହଉ ଆମ ପାଖରେ ରହ । ଏ କେତେ ଦିନ ରହିଲା । ଅସୁରୁଣୀର ଖାଲି ଫିକର ଲାଗିଥାଏ କେମନ୍ତ ଯାକୁ ମାରିବ । ଦିନେ ମିଛେଟାର ଜର କଲା ବୋଲି ଶୋଇଲା, ରାଜାଙ୍କୁ ଡକାଇପଠାଇ କହିଲା ଆମ ଦେଶରେ ଯେଉଁ ଚଳନ୍ତ ବାଜା, ଝିକମିକ ପାଣି ଅଛି ସେ ଯେବେ ଆସିବ ଔଷଧ ତିଆର ହେବ, ମୁଁ ଖାଇଲେ ଜର ଭଲ ହେବ । ରାଜା ଭାବିଲେ କିଏ ଯିବ ଏ ସବୁ ଆଣିବ ? ଅସୁରୁଣୀ କହିଲା, ସେ କଣ ସହଜ କଥା ? ଯେବେ ସେହି ପୁଅ ଯିବ ଆଣିପାରିବ, ନଇଲେ ଆଉ କେହି ଆଣିପାରିବେ ନାହିଁ । ରାଜା କହିଲେ ହଉ, ପୁଅକୁ କହିଲେ । ପୁଅ କଅଣ କଲା, ରାଜାଙ୍କ ଘୋଡ଼ାଶାଳରୁ ଘୋଡ଼ାଟିଏ ନେଲା, ବାହାରିଲା, ଗଲାବେଳେ ଏ ଅସୁରୁଣୀକି ଦଣ୍ଡବତ କରିବାକୁ ଗଲା । ଅସୁରୁଣୀ ଖଣ୍ଡେ ଭଷା ଲେଖିଲା ଛତରୁଣୀଙ୍କ ପାଖକୁ, କି ଏ ମୋ ସତଭୁଣୀଙ୍କ ପୁଅ ଯାଉଛି, ଯାକୁ ଯେମିତି ମାରି ଖାଇଦେବ; ଆଉ ଯେମନ୍ତ ଏ ରାଜ୍ୟକୁ ନ ଆସିବ । ଏତ ଚିଠିରେ ବଢିଥିଲା; ପାଠପଢି ନାହିଁ

ଭୂଷା କେଉଁଠୁ ପଢ଼ିବ ? ଭୂଷା ମନ୍ତ୍ରିକ ସେନ ଘୋଡ଼ାରେ ଚଢ଼ି ବାହା-
ରିଲେ । ଅଧବାଟରେ ହେଲାଣି, ଗୋଟାଏ ଜଙ୍ଗଲ ଦେଖିଲେ. ତାକୁ
କହିଲେ ହେ ଏ ଭୂଷାକୁ ପଢ଼ିଦିଅ, ଏଥିରେ ସବୁ କଥାଣ ଲେଖା
ହୋଇଛି । ଯାହା ସବୁ ଲେଖା ହୋଇଥିଲା, ଜଙ୍ଗଲ ପଢ଼ିଗଲା,
ଏ ଶୁଣିଲା, କହିଲା ଯେ, ଭୂଷାକୁ ଫେରପଢ଼ାଅ, ଅନ୍ୟଖଣ୍ଡେ ଲେଖିଦିଅ
ମୋ ପୁଅ ଯାଉଛି, ତାକୁ ଯେପରି କେହି ଅଣହେଳା କରିବ ନାହିଁ;
ଜଙ୍ଗଲ ଏପରି ଖଣ୍ଡେ ଭୂଷା ଲେଖି ଦେଲା, ଏ ନେଇକରି ଯାଇ
ଅପୁରଦେଶରେ ପହଞ୍ଚିଲା । ଭୂଷା ଦେଖି ସମସ୍ତେ କହିଲେ, ଆମ
ସାନ ଭଉଣୀ ପୁଅ ଆସିଲାଣି । ଏ ସମସ୍ତଙ୍କୁ ଦଣ୍ଡବତ କଲା । ତାକୁ
ସବୁ ଏମାନେ ଛଳେ ପକାଇ ଦେଲେ ନାହିଁ । ଭଲ ଯତ୍ନରେ ରଖା-
ଇଲେ, ସବୁ ଘରଦ୍ୱାର ଦେଖାଇଦେଲେ; ଏମାନଙ୍କ ଜୀବନ ଯେଉଁ-
ଥିରେ ଥିଲା ଓ ସ୍ୱାମୀ ମାନଙ୍କ ଆଖି ଅପୁରୁଣୀ ବାପଘରକୁ ପଠାଇ-
ଦେଇଥିଲା ତାକୁ ସବୁ ଦେଖାଇଲେ । ଏ ପଚାରିଲା ଆଖି କେମନ୍ତ
ଲାଗିବ ? ଅପୁରୁଣୀଯାକ କହିଲେ, ଝକ୍‌ମକ୍ ପାଣି ଦେଇ ଲଗାଇ
ଦେଲେ ଆଖି ସବୁ ଲାଗିଯିବ । ଏହାପର ବୁଲାବୁଲି କରି ସାରିଲା,
ସେଠାରେ ଦି ଚାରି ଦିନ ରହିଲା; ଦିନେ ଅପୁରୁଣୀଯାକ ଚରିବାକୁ
ଯାଇଥନ୍ତି, ଏ କଣ କଲା, ବଗଟମାନଙ୍କ ବେକ ମୋଡ଼ି ଦେଲା ଯେ
ଛ ଭଉଣୀଯାକ ସେ ଅଛେ ମରିଗଲେ । ସେଠାରୁ ଅପୁରୁଣୀ ରଜାଘରେ
ଥିବା ଚାରି ଜୀବନକୁ ନେଇ ଝକ୍‌ମକ୍ ପାଣି, ଛଅଜଣ ରାଜା,ମା ମାନଙ୍କ
ଆଖି ଯେନ ଘରକୁ ଆସିଲା । ଆସି ରଜାଙ୍କ ପାଖକୁ ଗଲା,କହିଲା, ତମ
ରାଣୀ ପର ଅପୁରୁଣୀ ନୁହେ ? ତାକୁ ଡକ, ଦେଖିବ କେତେ ଘୋଡ଼ା
ହାତୀ ଖାଇ ଗୋରୁ ଖାଇଛି । ରଜା ରାଣୀଙ୍କୁ ଡକାଇ ପଠାଇଲେ;
ଏଣେ ପୁଅ କଣ କରୁଥାଏ, ବଗବେକକୁ ମୋଡ଼ ଦେଉଥାଏ, ଯେ
ଅପୁରୁଣୀର ବେକ ମୋଡ ହୋଇପଡୁଥାଏ । ଅପୁରୁଣୀ ଆସି ପହଞ୍ଚିଲା,
ପୁଅ କହିଲା ଏ ପର ଅପୁରୁଣୀ ନୁହେ ? ଏହାଯାଣ ସବୁ ଜଣାଯିବ ।

ଆପଣମାନେ ଏଇଠି ବସନ୍ତୁ, ମୁଁ ଆପଣଙ୍କ ହାତୀ ଘୋଡ଼ା ସବୁ ଏହାରଠାରୁ ଅସ୍ଥଲ କରି ଦେଉଛି । ଏହାପରେ ସେହି ଅସୁରୁଣୀର ବଗଟିକୁ ଦେଖାଇଦେଲା । ଅସୁରୁଣୀ ବଗଟିକି ଦେଖି ଲଗାଉଥାଏ ମନେ ସେ ବଗଟିକି ଦେ, ମୁଁ ତମର ସବୁ ଦେବି, ପୁଅ ଲଗାଇଥାଏ ସବୁ ଦେଇ ସାର ମୁଁ ବଗ ଦେବି । ଅସୁରୁଣୀ ବାହାରକରି ପକାଇଲା ଯେ ହାତୀ ଘୋଡ଼ା ସବୁ ବାହାରିପଡ଼ିଲେ । ସେ ସେଇଠୁ ବଗଟିକି ମାରିଦେଲା, ଅସୁରୁଣୀ ଛଟପଟ ହୋଇ ମରିଗଲା । ସେମାନଙ୍କୁ ଗାଡ଼ିରୁ ବାହାର କଲା, ଠିକ୍ ଠିକ୍ ପାଣି ଲଗାଇ ତାଙ୍କ ଅଙ୍ଗ ସବୁ ଯୋଡ଼ିଦେଲା । ରାଜା ଆଉ ରାଣୀମାନେ ଖୁବ ସୁଖରେ ରହିଲେ, ସେ ପୁଅକୁ ବାହାଘର କଲେ । ସେ ଆନନ୍ଦରେ ରହି ଘର ଦୁଆର କଲା । ମୁଁ ଗଳ୍ପରୁ କଥା ନ କହିଲା । ମୋ କଥାଟି ସରିଲା, ଫୁଲଗଛଟି ଇତ୍ୟାଦି ।

## ପକ୍ଷିରାଜ ଘୋଡ଼ା କଥା ।

ଗୋଟିଏ ଚକୁଳିଆ ପଣ୍ଡାଟିଏ ଯେ ତାର ସାତ ଝିଅ । ଚକୁଳିଆ ପଣ୍ଡା ନଅଗାଁ ଗଲେ ପେଟେ, ଛଅଗାଁ ଗଲେ ପେଟେ ଅଣେ, ଘରେ ରହିଥାଏ ଯେ ଆଉ ଅନ୍ନ ନାହିଁ, ଚକୁଳିଆ ପଣ୍ଡା ଭାରିଯାକୁ ଗାଳି ଦିଏ, କହେ, ଯେତେ ଆଣିଦେଲି ଅଣ୍ଟିଲା ନାହିଁ ଅନ୍ନ କଣ କରିବି ? ଭାରିଯା କହେ, ପିଲାଏତ ଖାଇଯାନ୍ତି ମୁଁ କଣ କରିବି । ଚକୁଳିଆ ପଣ୍ଡା କହେ ପିଲାଙ୍କୁ କାହିଁକି ଦେଉ, ନାହିଁ କରି ଦେଉନାହୁଁ ? ଏହାପରେ

ଛାଡ଼ କହେ, ଯାଏ ଘର ମାଗି । ଦିନକର ହରିଯାକୁ କହିଲା, ଆଜ ପଂଠାକର, ଗୃଉଳ ଦେଇଗଲା, ଗାଧୋଇଗଲା । ଭାରିଯା ଗୃଉଳ ବାଟି ପିଠା କଲାବେଳକୁ ସାତ ଝିଅଯାକ ଅଇଲେ, କହିଲେ ମା କଣ କରୁଚୁ ଆମକୁ ଦେ । ମା ସାତ ଝିଅଙ୍କୁ ଗୋଟିଏ ୨ ଦେଇଁ ୨ ସବୁ ସରଗଲା । ବାପ ପାଇଁ ଅଉ କିଛି ରହିଲା ନାହିଁ । ବାପ ଗାଧୋଇ ଆଇଲା, କହିଲା ପିଠାପଣା କରିଥିଲୁ ଆଣ । ଏ କହିଲା, ପିଠା ନାହିଁ ସରଗଲାଣି । ପିଲାଏ ଖାଇଦେଲେ, ମୁଁ କଣ କରିବି । ବାପ କିଛି ନ କହି ଚୁପ ହୋଇ ରହିଲା । ମନ କଥା ମନରେ ଥାଏ, ଦି ଘଡି ଗଲା, ଏ ମିଛରେ ଦାଣ୍ଡଅଡକୁ ଯାଇ ଫେର ଆସି କହିଲା ଅଲୋ ଦେ ! ମାମୁଘର କହି ପଠାଇଚି ପିଲାଏ ସବୁ ଯିବେ । ମା କହିଲା, ହଉ ଯାଆନ୍ତୁ, ପିଲାଙ୍କୁ ହଳଦୀ ଟିକିଏ ୨ ଲଗାଇ ଦେଲା, କଳା ସିନ୍ଦୁର ଲଗାଇ ଦେଲା, ପେଡ଼ିରୁ ଶାଢ଼ୀ ଖଣ୍ଡେ ୨ ବାହାର କରି ପିନ୍ଧାଇଦେଇ ବାପ ସାଙ୍ଗରେ ଛାଡ଼ିଦେଲା । ବାପ ନେଇକରି ଗଲା, ଯାଇ ୨ ବଣସ୍ତରେ ଗୋଟାଏ ଅମ୍ବଗଛମୂଳେ ବସାଇଦେଇ କହିଲା ଏଇଠି ବସିଥାଅ, ମୁଁ ପାଣି ପିଇ ଆସେ । ଏହା କହି ବାହାରିଲା, କହିଗଲା ଯାଉଚି, ବାଟରେ ଦେଖିବ ଯେମିତି ପାଣି ଟୋପା ୨ ହୋଇ ପଡ଼ିଥିବ ମନେ କରିବ ବାପ ଜୀଇଚି; ରକତ ଟୋପା ୨ ହୋଇ ପଡ଼ିଥିଲେ କହିବ ଯେ ବାପ ମଲାଣି । ଏହା କହିଲା, ଗଲା । ଗୋଟାଏ ଛେଳି ମାରି ବାଟରେ ରକତ ଟୋପା ୨ କରି ପକାଇ ଘରକୁ ଅସିଲା ବାହାରି । ପିଲାଏ ବସି ୨ ଯେଉଁଠୁ ବେଶୀ ସମୟ ହେଲା, ଗଲେ ବାଟ ଦେଖିଦେଖିକା । ଦେଖିଲେ ରକତ ପଡ଼ିଚି ଟୋପା ୨ ହୋଇ, ମନେ କଲେ ବାପକୁ ବାଘ ମାରି ସାରିଲାଣି । ଫେରିକରି ଅସି ସେହି ଅମ୍ବଗଛମୂଳେ ବସିଲେ । କାନ୍ଦୁଥାନ୍ତି, କାନ୍ଦି ୨ ଭଡ଼ ହେଲା ଯୋଉଠୁ, କହିଲେ ହେ ବୃକ୍ଷରାଜ, ତୁ ଫାଟିଯା, ଆମେ ପଶିଯାଉଁ । ଗଛ ଫାଟିଗଲା, ଏମାନେ ପଶିଗଲେ । ଖାଇବାକୁ ପିଇବାକୁ ନ ପାଇ ଏଥି ଭିତରେ କାନ୍ଦୁଥାନ୍ତି

ସବୁବେଳେ । ବନକର ରାଜା ପାରଧିକି ଆସିଥିଲେ ସେହି ବନସ୍ତକୁ । ଏମାନେ ଗଛ ଉପରେ ଗୁଣୁ ଗୁଣୁ ହୋଇ କାନ୍ଦୁଥାନ୍ତି, ମନ୍ତ୍ରୀ ଉପରେ ଲୁହ ଟୋପାଏ ପଡ଼ିଲା । ମନ୍ତ୍ରୀ କହିଲା, ମଣିମା ଗୋଟିଏ କଥା କହିବାକୁ ଭାରି ଭୟ ଲାଗୁଛି ! ରାଜା କହିଲେ କଣ କହୁନାହିଁ ? ମନ୍ତ୍ରୀ କହିଲା, ମଣିମା ! ଏ ଗଛରେ କିଏ ଅଛି କାନ୍ଦୁଛି ଯେ ଲୁହ ପଡ଼ିଲା ମୋ ଉପରେ । ରାଜା କହିଲେ ଗୁଣୁଣିଆକୁ ଗୁଣିବୁଝ, ଅମ ଉଲକା କି ତମ ଉଲକା ? ଗୁଣିଆ ଗୁଣିକରି କହିଲା, ନାହିଁ ମଣିମା, ଅପଣଙ୍କ ସରସା ( ୧ ) ରାଜା ସେଉଠୁ କହିଲେ, ଅମ ସମାନ ଯେବେ, ହାତ ଧରିକରି ଆଣ । ମନ୍ତ୍ରୀ ଯାଇଁ ଦେଖେ ଯେ ସାତଟି ଝିଅ, ତାଙ୍କୁ ସବୁ ହାତ ଧରିକରି ନେଇ ରାଜାଙ୍କ ପାଖେ ଠିଆ କରାଇ ଦେଲା । ରାଜା ପଚାରିଲେ, ହଇଲୋ ! ତେମେମାନେ କି ଘର ଝିଅ ? ଏମାନେ କହିଲେ, ଆମେ ଚକୁଳିଆ ପଣ୍ଡା ଝିଅ, ଆମକୁ ଏଠେଇଁ ବାପ ଛାଡି ଦେଇଗଲା, ଏହିପରି ସବୁ କଥା କହିଗଲେ । ରାଜା କହିଲେ ତେମେ ସବୁ କି କାମ କରିବ ? ଆଗ ବଡ଼କୁ ଡାକିଲେ, ପଚାରିଲେ ତୁ କି କାମ କରିବୁ ? ଏ କହିଲା, ମୁଁ ସବୁ କରିବି—ଚାଉଳ ଡୋଲିକ ଭାତ ରାନ୍ଧିବି, ସମସ୍ତଙ୍କୁ ଖାଇବାକୁ ଦେବି, ପାନ ଦେବି, ଚଡ଼ଣା ଦେବି, ବାସି କରିବି ତିଅସି କରିବି । ତା ତଳ ଭଉଣୀକି ପଚାରିଲେ, ସେ ସେମନ୍ତ କହିଲା —ମୁଁ ବଡ଼ ଭଉଣୀକି ବାଣ୍ଟିବି, ପିଠା କରିବି, ସମସ୍ତଙ୍କୁ ଖାଇବାକୁ ଦେବି, ପାନ ଦେବି, ଚଡ଼ଣା ଦେବି, ବାସି କରିବି ତିଅସି କରିବି; ଏହିପରି ଆଉ ୬ ଭଉଣୀମାନେ କହିଲେ । ସବା ସାନଭଉଣୀ କହିଲା, ମୁଁ କିଛି କରି ପାରିବି ନାହିଁ—ରାଜାଙ୍କ ପାଟରାଣୀ ହେବି, ସାତପୁଅ,

୧ । ସଦୃଶ, ଉପମା ।

ସୁନାନାକୀ ଝିଅ ଜନ୍ମ କରିବ । ସେ ଯେପରି କହିଥିଲେ, ରଜା ସେମାନଙ୍କୁ ସେହିପରି କାର୍ଯ୍ୟ ଦେଲେ । ସମସ୍ତଙ୍କୁ ନଅରରେ ରଖାଇଲେ, ସାନ ରାଣୀଙ୍କ ପାଟରାଣୀ କଲେ, ରଖିଲେ । ଏହିପରି କେତେ ଦିନ ଗଲା, ସାନରାଣୀର ଗର୍ଭ ହେଲା । ରଜା ଦରବାରକୁ ଯାନ୍ତି । ଯିବାକୁଯାଉଣ୍ଡେ ଝିଙ୍କଣୀ ଦେଇଯାନ୍ତି, କହନ୍ତି ଯେ ଯେତେବେଳେ ତୋ ଦେହ ହେବ (୧) ସେତେବେଳେ ଯିବାକୁ ବଜାଇବୁ ଯେ ମୁଁ ଆସିବି, କଚେରି ପଛେ ଫାଟି ଯାଉଥିବ, ତୋ ଝିଙ୍କଣୀବଜା ଶୁଣିଲେ ମୁଁ ଆସିବି । କବାଟ କିଳି ଦେଇଥିବୁ, ତୋ ଭଉଣୀମାନେ ଯେତେ କବାଟରେ ମାରିବେ, କେବେ କବାଟ ଫିଟାଇବୁ ନାହିଁ । ଦିନେ ଏ ଜଣକଣ, ମିଛରେ ଟିକିଏ ଝିଙ୍କଣୀ ବଜାଇ ଦେଲା, ଦେହ କିଛି ହେଉ ନ ଥାଏ, ଝିଙ୍କଣୀବଜା ଶୁଣି କରି ରଜା ଆସିଲେ ତାହାର କଚେରି ଭାଙ୍ଗି ଦେଇ । ଆସି ଦେଖିଲେ ବେଳକୁ ଦେହ କିଛି ହୋଇନାହିଁ । ରଜା ବଡ଼ ବିରକ୍ତ ହେଲେ, ରାଣୀଙ୍କ କହିଗଲେ, ଏଣିକି ତୁ ବଜାଇ ୨ ଥକିବୁ ମୁଁ କେବେ ଆସିବି ନାହିଁ । କିଛି ଦିନ ଗଲା ତାହାର, ଏହା ଦେହ ହେଲା, କବାଟକୁ କିଳି ଦେଇଥାଏ, ଝିଙ୍କଣୀ ବଜାଉଥାଏ, ବଜାଇ ୨ ଥକିଗଲା, ଆଉ ରଜା ଆସିଲେ ନାହିଁ । ଏ ଛଅ ଭଉଣୀ ଧାଇଁ ଏ ଘରକୁ ଗଲେ, କବାଟରେ ମାରିଲେ, କହିଲେ ଆମେ କିଛି କରିବୁ ନାହିଁ ତୁ କବାଟ ଫିଟା । କେତେ କରି କହିଲେ, ରାଣ ନିମ୍ବୁଦ ପକାଇଲେ ଯୋଉଠୁ, ଏ କବାଟ ଫିଟାଇ ଦେଲା । ଧାଇ ଘର ଭିତରକୁ ପଶିଗଲା, ଶୂଳ ଧରିଲା, ଯେତେବେଳକୁ ପୁଅ ଜନ୍ମ ହେବ, ତେତେବେଳେ କଣ କଲେ, କହିଲେ ଏ ଗାଁରେ ଅଛି ମୁହଁରେ ଅନ୍ଧୁଣି (୨) ଢକାଇ ଜନ୍ମ କରନ୍ତି, ଏହା କହି ମୁହଁରେ ଅନ୍ଧୁଣି ପକାଇ ଦେଲେ । ପୁଅ ଯେମନ୍ତ ଜନ୍ମ

---

(୧) ପ୍ରସବ ବେଦନା ହେବ ।   (୨) କଷ୍ଟ ଘୋଡ଼ାଇବାର ବସ୍ତ୍ର

ହୋଇପଡ଼ିଲା; ଧାଈ ଧଡ଼ପଡ଼ କରି ତାକୁ ନେଇଗଲା, ଖତଗଦାରେ ପୋତିଦେଇ ଆସିଲା, ଗୋଟାଏ କାଠକଣ୍ଢେଇ ସେଠାରେ ପକାଇ ଦେଇ ସାନରାଣୀ ମୁହଁରୁ ଅନ୍ଧୁଣି ଫିଟାଇ ଦେଲେ, କହିଲେ କାଠ କଣ୍ଢେଇଟାଏ ଜନ୍ମ କରିଛ । ସାନରାଣୀ କାନ୍ଦି ବୋବାଇ ଭୂମି ହୋଇ ରହିଲା । ରାଜା ଆସିଲେ, ପଚାରିଲେ କଣ ଜନ୍ମ ହେଲା ? ଏମାନେ ଆଗଭୁର କରି କହିଲେ କାଠ କଣ୍ଢେଇଟାଏ ଜନ୍ମ କରିଛି । ରାଜା କହିଲେ ତେବେ ତା ମୁହଁ ଚାହିଁନା, ତାକୁ ଘୋଡ଼ାଶାଳ ଲଣ୍ଡି ପୋଛୁଥ, ତାର ଚୁନ୍ଟି କାଟିଦେଇ ଘୋଡ଼ାଶାଳକୁ ପଠାଇ ଦିଅ । ସାନ ରାଣୀର ଚୁଟି କାଟିଦେଇ ଘୋଡ଼ାଶାଳକୁ ପଠାଇଦେଲେ । ସେ ପୁଅକୁ ଯେତେବେଳେ ଖତଗଦାରେ ପୋତିଦେଲେ, ଆଉ କେହି ଦେଖି ନ ଥାଏ, କୁକ୍କୁର ଦେଖିଥାଏ । କୁକ୍କୁର ଗଲା, ପିଲାଟିକି ଖତଗଦାରୁ ବାହାର କଲା, ଆଉ ତାକୁ ଖାଇଲା ନାହିଁ, ଚାଟିଚୁଟି ସଫା କରି ଦୁଧ ପିଆଇଲା, ସେହି ଖତଗଦାରେ ରଖିଦେଇ ଆସିଲା । କୁକୁର ଏହିପରି ସବୁ ଦିନେ କରୁଥାଏ, ଏମନ୍ତେ କେତେଦିନ ଗଲା । ଦିନକରେ ଧାଈ ଦେଖିଲା, ବଡ଼ରାଣୀଙ୍କ ଆଗରେ କହିଲା, ସାନ୍ତାଣି ! ଆମେ ଯେଉଁ ପୁଅଟିକି ଖତଗଦାରେ ପୋତି ଦେଇ ଆସିଥିଲୁଁ, ତାକୁ ପରା ଗୋଟିଏ ପିଲା କୁକ୍କୁର ଖତଗଦାରୁ ବାହାରକରି ଚାଟିଲା, ତାକୁ ଦୁଧ ପିଆଇଲା, ସେହି ଖତଗଦାରେ ଘୋଡ଼ିଦେଇ ରଖି ଦେଲା, ଆଉ ତାକୁ ଖାଇଲା ନାହିଁ କି କିଛି କଲାନାହିଁ । ବଡରାଣୀ କଣ କଲା, ରାଜାଙ୍କ ପାଖକୁ ଖବର ଦେଲା, କହିଲା ରାଜାଙ୍କୁ, କହିବ ବଡ ରାଣୀଙ୍କୁ ଜର କରିଛି, କୁକ୍କୁର ରକ୍ତରେ ଗାଧୋଇଲେ ଜର ଛାଡ଼ିବ । ଧାଈ ଗଲା ରାଜାଙ୍କୁ ସେଇଆ କହିଲା । ରାଜା ମନ ଭୋଳ ତ, କହିଲେ ହଉ । କୁକୁର ଏହା ଜାଣିପାରି କୂଅ ପାଖକୁ ଗଲା, ପୁଅଟିକି ପାଣିରେ ପକାଇଦେଲା, କହିଲା ହେ ଗଙ୍ଗାମାତା, ତୁ ଏଇଟିକି ପାଳ, ମତେ ତ ମାରିବାକୁ କହିଲେଣି । କୂଅ ଭିତରେ ଗଙ୍ଗାମାତା କଣ

କରନ୍ତି ପୁଅଟିଙ୍କ ଉପରକୁ ଉଠାଇ ଦଅନ୍ତି, ଫେର୍ ( ୧ ) ନେଇଯାନ୍ତି, ଏହିପରି ସବୁଦିନେ ଖେଳାଉଥାନ୍ତି, ଦିନେ ଧାଈ ଦେଖିଲା ଯାଇ ବଡ ରାଣୀକି କହିଲା, ଆମେ ଯେପରି ପିଲାଟିଏ ଖତଗଦାରେ ପୋତି ଦେଇଥିଲୁଁ ସେହିପରି ଗୋଟିଏ ପିଲା କୂଅରେ ଖେଳୁଛି । ବଡରାଣୀ ଶୁଣିଲା, ରାଜାଙ୍କ ପାଖକୁ ଖବର ଦେଇ ପଠାଇଲା ଯେ ବଡ଼ରାଣୀଙ୍କ ଦେହ ବ୍ୟସ୍ତ ଅଛି, କାଲି କୂଅର ପାଣି ବୁହାହେବ, ସେଥିରେ ଯେଉଁ ମାଛ ଅଛି ତାକୁ ଖାଇଲେ ଦେହ ଭଲ ହେବ । ଧାଈ ଗଲା ରାଜାଙ୍କୁ କହିଲା, ରାଜା କହିଲେ ହଉ । ଗଙ୍ଗାମାତା ଶୁଣିଲେ, କାଳୀଗାଈକି କହିଲେ ହେ । ତୁ ଏ ପୁଅଟିକି ରଖ, ଦୁଧ ପିଆଇବୁ, ଖେଳାଇବୁ, ରଖିଥିବୁ । କାଲିତ କୂଅର ପାଣି ବୁହାଯିବ, ମୁଁ ଆଉ କେଉଁଠି ରଖିବି ? କାଳୀଗାଈ ପୁଅଟିକି ନେଇ ରଖିଲା । ତହିଁ ଆରଦିନ କୂଅରୁ ଠିକକ ଠଉଁ ( ୨ ) ପାଣି ବୁହାହେଲା, ଦେଖିଲାବେଳକୁ କିଛି ନାହିଁ । କାଳୀ ଗାଈ କଣ କରେ ଅରଣ୍ୟଭିତରକୁ ଯାଏ ଆହାର, ପୁଅକୁ ପେଟଭିତରେ ରଖିଥାଏ, ବାନ୍ତକରି ବାହାର କରେ, ଚାଟେ, ଖେଳାଏ, ଦୁଧ ପିଆଏ, ଫେର୍ ଗିଳି ଦିଏ, ଚରିବୁଲି କରି ଆସେ । ଏହିପରି ସବୁଦିନ କରୁଥାଏ । କାଳୀ ଗାଈର ଦୁଧ ଊଣା ହେଲା, ଗଉଡ଼କୁ ମାଡ଼ ହେଲା, କାହିଁକି ଦୁଧ ଊଣା ହେଉଛିବୋଲି, ଗଉଡ଼ କହିଲା ମୁଁ ତ ସବୁଦିନେ ଚରାଇ କରି ଆଣୁଛି, ବାଛୁରୀର ଜମା ଦେଖା ସାକ୍ଷାତ ନାହିଁ, ଦୁଧ କାହିଁକି କମ୍ ହେଲା ମୁଁ କଣ କରିବି ? ଦିନକର ଗଉଡ଼ ଲୁଚିକରି ବସିଲା, ଦେଖେ ଯେ ଗାଈ ଗୋଟିଏ ପିଲା ବାହାର କରି ପେଟଭିତରୁ ଦୁଧ ପିଆଉଛି । ଦୁଧ ପିଆଇ ସାରି ପିଲାଟିକି

---

୧ । ପୁନଶ୍ଚ　　୨ । ଶେଷ ବନ୍ଦ ପର୍ଯ୍ୟନ୍ତ

ଫେର ଗିଳିଦେଲା । ରାଜପୁତ୍ର ଏହାକୁ ଦେଖି ବଡରାଣୀକୁ କହିଲା, ବଡ଼ରାଣୀଙ୍କର ହୁକୁମ ପଡ଼ିଲା ଯେ କାଲିଗାଈ ହଣା ହେବ, ତା ମାଂସ ଖାଇଲେ ମୋ ଦେହ ଭଲ ହେବ । କାଳିଗାଈ ଏହା ଶୁଣି ଘୋଡାଶାଳକୁ ଗଲା, ପକ୍ଷିରାଜ ଘୋଡ଼ାକୁ କହିଲା ମୁଁ ଏତେଦିନ ଯାଏ ରଖିଥିଲି, ମତେ ତ ହାଣିବାକୁ ବସିଲେଣି, ତୁ ଏହାକୁ ନେ, ଯେଉଁ ଆଡ଼େ ଇଚ୍ଛା ସେଆଡ଼େ ନେଇଯା । ଘୋଡ଼ା ପୁଅକୁ ରଖିଲା, ଉପରେ ବସାଇ ନେଇକରି ଗଲା ବାହାରି । ପକ୍ଷିରାଜ ଘୋଡ଼ା ପବନବେଗରେ ଚାଲୁଛି, ଯାଉଁ ଗୋଟାଏ ଶୋଳ ପୋଖରୀ ପାଖରେ ବାଘା ଚଢ଼ାଇ ଗୁଡ଼ାଏ ଥଡ଼ୁଆ ଥଡ଼ୁଆ ହୋଇ ଗଣ୍ଡି ପଡ଼ି ଯାଇଛନ୍ତି, ଫିଟି ପାରୁ-ନାହାନ୍ତି, ଏହାର ଶବ୍ଦରେ ଫିଟିଗଲେ । ଘୋଡ଼ା ସେଇଠି ହମ୍-ମାରିଲା, ବାଘୁ ଚଢ଼ାଇଗୁଡ଼ିକ କହିଲେ ରାଜାପୁଅକୁ, ଆମେ ବାରବର୍ଷ ହେଲା ଗଣ୍ଡି ପଡ଼ିଯାଇଥିଲୁ, ଫିଟି ପାରୁ ନ ଥିଲୁ, ଖାଉ ନଥିଲୁ, ପିଉ ନ ଥିଲୁ, ତମେ ଆମକୁ ଉଦ୍ଧାର କଲ, ତମର ଆମେ କଣ ଉପକାର କରିବୁ ? ରାଜାପୁଅ କହିଲା ଅଇଟୁକା (୧) ତମର କିଛି କରିବାର ଦରକାର ନାହିଁ, ଯେତେବେଳେ ମତେ ବିପତ୍ତି ପଡ଼ିବ ତେମେ ସେତିକବେଳେ ମୋର ଉପକାର କରିବ । ଏହା କହି ପକ୍ଷିରାଜ ଘୋଡ଼ା ଉପରେ ଚଢ଼ି ସେଠାରୁ ଗଲା, ଯାଇଁ ଏକ ରାଜାଦେଶରେ ପହଞ୍ଚିଲା, ସେଠାରେ ଗୋଟାଏ ମାଳୁଣୀଘରେ ରହିଲା । ଦୁଇ ଚାରିଦିନ ଗଲା, ମାଳୁଣୀ ଫୁଲ ଗୁନ୍ଥୁଛି, ଏ ପୁଅ କହିଲା, ହଇଲୋ ମାଉସି କାହାପାଇଁ ଫୁଲ ଗୁନ୍ଥୁଛ କି ? ମୁଁ ଖଣ୍ଡିଏ ଗୁନ୍ଥନ୍ତି ? ମାଳୁଣୀ କହିଲା ରାଜାଙ୍କ ଝିଅ (୨) ପାଇଁ ଫୁଲ ଗୁନ୍ଥୁଛି, ତୁ କୋଉଠି ଗୁନ୍ଥିବୁ, ଅବୁଝିଆ

---

୧ । ବର୍ତ୍ତମାନ    ୨ । ଝିଅ

ହେବ । ଏ କହିଲା ମୁଁ ଖଣ୍ଡିଏ ଗୁନ୍ଥେଇ ଦେଖେ, ସୁନ୍ଦର ହେଲେ ନେଇଯିବ୍ର ଅସୁନ୍ଦର ହେଲେ ପକାଇ ଦେଇଯିବୁ । ରାଜପୁଅ ଯେଉଁ ଫୁଲଖଣ୍ଡି ଗୁନ୍ଥିଲା ସେ ଅତି ସୁନ୍ଦର ହେଲା, ମାଲୁଣୀ ନେଇ ରାଜାଙ୍କ ଝିଅକୁ ଦେଲା । ଜେମାଦେଈ କହିଲେ, ଆଜି ଏ ଫୁଲ କଏ ଗୁନ୍ଥିଛି କି ଏଡ଼େ ସୁନ୍ଦର ହୋଇଛି ? ମାଲୁଣୀ କହିଲା ମୋ ଝିଅ ଆସି ଅଛି ଯେ ତାହାର ହାତର ଗୁନ୍ଥା । ଜେମା ସେ ଝିଅଙ୍କ ଦେଖିବାକୁ ଲଗାଇଲେ । ମାଲୁଣୀ ତହିଁ ଆରଦିନ ରାଜାପୁଅକୁ ଝିଅଁର (୧) ଶାଢ଼ୀ ଖଣ୍ଡେ, ପିତ୍ତଳଗଡ଼ୁ ହପଟ ପିନ୍ଧାଇ ଦେଇ ରାଜା ନଅରକୁ ନେଇଗଲା ଜେମା ଏହା ସଙ୍ଗରେ କଥାବାର୍ତ୍ତା ହେଲେ । ରାଜାପୁଅ କହିଲା ମୁଁ ଝିଅ ନୁହେ ଆର ଦେଶର ରାଜାପୁଅ, ଏମନ୍ତ୍ର ଦୁର୍ଘଟନାରେ ପଡ଼ି ଏଠାକୁ ଆସି ମାଲୁଣୀଘରେ ରହିଅଛୁ । ଏହିପରି ଦେଖା ସାକ୍ଷାତ ହୋଇ ରାଜାପୁଅର ଅଭ ସେ ଜେମାର ବଡ଼ ମନ ମିଳିଲା । ରାଜାପୁଅ ସବୁଦିନେ ରାତିରେ ଜେମାଙ୍କ ପାଖକୁ ଯିବା ଆସିବା କରେ, ତା ଆଉ କେହି ଜାଣନ୍ତି ନାହିଁ । ରାଜାଝିଅ ସବୁଦିନେ ତଉଲା ହୁଏ, ଗୋଟିଏ ଫୁଲର ଓଜନ ହୁଏ, ଯୁଆଡ଼କୁ ବେଶୀ ଓଜନ ହେଲା । ଯେ ବଣିଆ ତଉଳିଲ ସେ ରାଜାଙ୍କୁ କହିଲା ମଣିମା ! ଆପଣଙ୍କ ଜେମାଦେଈ ଏବେ ବେଶୀ ଭାରି ହେଲେଣି, ଗୋଟିଏ ଫୁଲରେ ଅଭ ଏବ ଓଜନ ହଉ ନାହାନ୍ତି । ରାଜା ବିଚାର କଲେ ଝିଅ ପାଖକୁ କଏ ଆଉ ଆସୁଛି ! ହୁକୁମ ଦେଲେ ଯେ ଅଙ୍ଗ ସିନ୍ଦୂରରେ ବିଛଣା କର, ଯେ ଆସିବ ସେ ଚିହ୍ନା ପଡ଼ିବ । ଯୋଉଁକୁ କୁହା ହୋଇଥାଏ କି ତୋ ଘରେ ଯେ ଏପରି ଲୁଗା ପକାଇବ ତାକୁ ଧରାଇ ଦେବୁ, ନ ଦେଲେ ତୋର ସବଂଶ ମୁଣ୍ଡ କଟା ହେବ । ସେଦିନ ରାତିକ ରାଜାପୁଅ ଆସିଲା । ଜେମାଦେଈ

---

୧ । ଝିଅ ।

କହିଲେ ହେ ! ତେମେ ଅଜ ଯାଅ ବାହାର, ସିନ୍ଦୂରରେ ଲକ୍ଷଣା ହୋଇଚ । ଏ ଅମାନଅହୋଇ ଲକ୍ଷଣାରେ ବସାଉଠାକଲା,ଧୋବାକୁ ଟଙ୍କା ଦେଇ ଲୁଗା କଚ୍ଛର ଅଣିଲା, ଅଉକେହୁ ଜାଣି ପାରିଲେନାହିଁ । ତହୁଁ ଆରଦିନ ଧୋବାକୁ ପଚରି ଦେଲା, ସେ ନାହିଁ କଲା, କହିଲା, କେହୁ ମୋ ଘରେ ଲୁଗା ପକାଇ ନାହାନ୍ତି । ରାଜା କହିଲେ ଅଉ କଣ କଲେ ଜଣାପଡ଼ିବ ? ମନ୍ତ୍ରୀ କହିଲେ, କଂସାର କରତ କଉ କବାଟ ଦେହରେ ଦେଇଥାଅ, ଯେ ଅସିବ ତା ଉପରେ ପଡ଼ିଲେ ମରିବ । କଂସାର କରତ ତିଆର ହେଲା, ନାଗବନ୍ଧ ଦେହରେ ଦିଆଗଲା । ରାଜାପୁଅ ସେଦିନ ସେଦ୍ୱପର ଅସିଲା, ରାଜାଝିଅ କହିଲା କାହିଁକି ଅସିଲ, ଅଜ କଂସାର କରତ କଉ ନାଗବନ୍ଧରେ ଦେଇଛନ୍ତି, ତେମେ ଫେରିଯାଅ । ରାଜାପୁଅ କହିଲା ଓହୋ ! କଣ ହୋଇଯିବ ? ଯେବେ କୁଟୁକଥା ହୋଇଯିବ, ତେବେ ମତେ ପୋଡ଼ିବ ନାହିଁ କି ପୋତିବ ନାହିଁ, ନେଇକରି ଶୋଲପୋଖରୀ ପାଖରେ ଶୁଆଇ ଦେଇ ଅସିବ । ଏହା କହି ଘରଭିତରକୁ ପଶିଗଲା ବେଳକୁ କରତ ଖସିଲା ଯେ ରାଜାପୁଅ ମୁଣ୍ଡରେ ପଡ଼ିଲା, ରାଜାପୁଅ ସେଇଠି ମରିପଡ଼ିଲା । ତହିଁଆରଦିନ ସବୁ ଦେଖିବାକୁ ଅସିଲେ, ଅସି ଦେଖନ୍ତି ଯେ ଉତ୍ତମ ସୁନ୍ଦର ରାଜପୁଅଟିଏ ମରିପଡ଼ିଚି । ରାଜା କହିଲେ ଝିଅକୁ ଅହା ! ଏଡ଼େ ସୁନ୍ଦର ପିଲାକୁ ତୁ କାହିଁକି ମାରିଲୁ, କହିଥିଲେ ତୋତେ ସେଥିକୁ ବିଭା କରାଇ ଦେଇଥାନ୍ତି । ଝିଅକୁ ସମସ୍ତେ ଗାଳିଦେଲେ । ରାଜା କହିଲେ ଗୁଆଦିଅ ଚନ୍ଦନକାଠ ଅଣି ଦାହା କରାଇଦିଅ । ଝିଅ କହିଲା ନାହିଁ ସେ ମନା କରିଚନ୍ତି, କହିଚନ୍ତି ମୋତେ ପୋଡ଼ିବ ନାହିଁ କି ପୋତିବ ନାହିଁ, ଶୋଲପୋଖରୀ କୂଳେ ଶୁଆଇଦେଇ ଅସିବ । ରାଜା କହିଲେ ହଉ ନାଥ, ସେ ଯାହାକହିଚି ସେଇଆ କର । ନେଲେ ଶୋଲ ପୋଖରୀପାଖରେ ଶୁଆଇଦେଇ ଅସିଲେ ବାହାର । ସେ ବାପ୍ପାଚଢ଼ାଇ ଯାକ ଚାଲିଲେ, ସେ ରାଜାପୁଅ ପାଖରେ ବସି ଗୁଣୁ ଗୁଣୁ ହୋଇ

କାନ୍ଦିଲେ । ଏହିପରି କାନ୍ଦି୨ ସନ୍ଧ୍ୟା ହେଲା, ଈଶ୍ୱରପାର୍ବତୀ ଆକାଶରେ ଭ୍ରମଣଯାଉଥିଲେ, କାନ୍ଦଣା ଶୁଣିଲେ । ପାର୍ବତୀ କହିଲେ, ଉହବଟି କାହିଁକି ପୃଥିବୀଠାରେ ଭାସି୨ ଲୁଟୁଛି, କି ? ଗଡ଼ିଏ ଗଡ଼ି୨ ହୋଇ କାନ୍ଦିଲା ପରି ଶୁଭୁଛି । ଈଶ୍ୱର କହିଲେ ଗୁଲବାହାର ହୋ ! ଆମର ସେଥିରେ କଣ ଅଛି ? ପାର୍ବତୀ କହିଲେ ନିଶ୍ଚୟ ନାହିଁ, ପୃଥିବୀର ଭାର ନେଇଛ କାହିଁକି ? ଈଶ୍ୱର କହିଲେ ହଉ ଚାଲ । ଗଲେ, ପଚାରିଲେ, ତୁମେ କିଏ କାହିଁକି କାନ୍ଦୁଛ ? ବାସ୍ନାଚଢ଼ାର ଗୁଡିକ ଆପଣାର ଆଉ ରାଜାପୁଅର ଯେତେ କଥା ଥିଲା ସବୁ କହିଗଲେ । ଈଶ୍ୱରପାର୍ବତୀ କହିଲେ, ହଉ ଏତେବେ ଦେଖିବ ମୁହିଁ ଲୁଚ । ଏମାନେ ସେ ଆଡ଼କୁ ମୁହିଁ ବୁଲାଇ ବସିଲେ, ଈଶ୍ୱରପାର୍ବତୀ ଫୁଲପାଣି କରି ଛିନିମୁଣ୍ଡା ଛୁଇଁଦେଲେ ଯେ ରାଜପୁଅ ଜୀଇଁ ଉଠିଲା, ଈଶ୍ୱରପାର୍ବତୀ କୁଆଡ଼େ ଉଭେଇ ଗଲେ । ରାଜାପୁଅ ତହିଁ ଆର ଦିନ ଉଠି ମାଲୁଣୀଘରକୁ ଗଲା, ସେଦିନ ରାତିରେ ରାଜାଝିଅ ସାଙ୍ଗେ ଦେଖା କଲା । ସେ ବଞ୍ଚିକରି ଆସିଲାଣି ବୋଲି ରାଜା ଜାଣିଲେ, କହିଲେ, ଆମ ଝିଅକୁ ଯାକୁ ବାହାକରି ଦେବା । ଘର ଲିପା ହେଲା, ବେଦୀ ତୋଳା ହେଲା, ବାହାଘରର ଆଉ ସବୁ ଆୟୋଜନମାନ ହେଲା, ରାଜା ଭଲଦିନ ଦେଖି ଝିଅକୁ ସେ ରାଜାପୁଅକୁ ବାହା କରିଦେଲେ, ବହୁତ ଯାନ ଯଉତୁକ ଦେଇ ଝିଅଜୋଇଁଙ୍କୁ ବିଦା କଲେ । ରାଜାପୁଅ ବିଭା ହୋଇ ଘରକୁ ଆସୁଛି, ଗାଁପାଖରେ ହେଲାଣି ସମସ୍ତେ କହିଲେ କେଉଁ ରଜା ଆସୁଛି, ଯୁଦ୍ଧ କରିବାକୁ । ରାଜା ଆଉ ପୁଅ ବୋଲି ଜାଣି ନାହାନ୍ତି, ବେକରେ ପାଲଦଉଡ଼ି ଗୋଟିଏ ପକାଇ ଦଣ୍ଡବତ କରିବାକୁ ଗଲେ, ଯାଇଁ ପାଲିଙ୍କି ପାଖରେ ଲମ୍ବ ହୋଇ ଗୋଡ଼ତଳେ ପଡ଼ିଗଲେ । ଏ ପାଲିଙ୍କିରୁ ଡେଇଁ ପଡ଼ିଲା କହିଲା ଏକଣ ! ତୁମେ ବାପ, ମୁଁ ପୁଅ, ତୁମେ ମୋ ଗୋଡ଼ତଳେ ପଡୁଛ ? ରାଜା କହିଲେ ମୁଁ ପୁଅ କୋଉଠୁ ପାଇବି ? ଏ କହିଲା ତମ ଘୋଡ଼ାଶାଳ ଲଣ୍ଡିକୁ

ତାକ, ଧାଈକୁ ତାକ, ଏମାନେ ସବୁ କଥା କହିବେ । ଏମାନଙ୍କୁ ଡକାଗଲା, ଏମାନଙ୍କ ଆଗରେ ରାଜାପୁଅ ସବୁ କହିଗଲା, ଯେପରି ସେ ଜନ୍ମ ହେବାବେଳେ ଧାଈ କାଠକଣ୍ଢେଇଟାଏ ଦେଖାଇ ତାକୁ ଖତଗଦାରେ ପକାଇଦେଲା, କୁକୁର, କୂଅ, କାଳୀଗାଈ, ପକ୍ଷିରାଜ ଘୋଡ଼ା ଯେପରି ତାକୁ ବଞ୍ଚାଇ ମଣିଷ କଲେ, ସବୁ କଥା କହିଗଲା । ଏ ସବୁ କଥା ମାନିଗଲା । ରଜା ପୁଅବୋହୂକୁ ଘରକୁ ନେଲେ, ଘୋଡ଼ାଶାଳ ଲାଣ୍ଡିକୁ ଆଣିଲେ, ତାକୁ ସପାସୁଦ୍ଧ କରାଇ ପାଟପୀତାମ୍ବର ପିନ୍ଧାଇ ଘରକୁ ନେଲେ । ଗୋଟାଏ ଚୋପର (୧) ଖୋଳାଇ ଏ ଛଅଭଉଣୀଙ୍କ ଧାଈଙ୍କ ତହିଁରେ ପକାଇଦେଲେ, ତଳକଣ୍ଟା ଉପର କଣ୍ଟା ପୁଟିଦେଲେ, ମାଟିଚଢ଼ାଇ ଦେଲେ । ରାଜା ପୁଅବୋହୂ ଯେଣୁ ଘରଦୁଆର କଲେ, ମୁଁ ଗଲାକୁ କଥା କହିଲେ ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।

— ❀❀ —

## ହଳାହଳକୁମର ବା ଶଶିସେନା
## ଅଭିମନ୍ୟୁ କଥା ।

ଗୋଟିଏ ଦେଶରେ ରଜାଟିଏ, ତାର ଗୋଟିଏ ଝିଅ । ଝିଅଟି ନାଁ ଶଶିସେନା । ସେହି ଦେଶରେ ଗୋଟିଏ ବେକୁଲିଆ ପଣ୍ଡା ଥାଏ, ତାର

---

୧ । ଗାତ ।

କେହି ନାହିଁ ; ଗୋଟିଏ ଭାରିଯା । ଚକୁଳିଆପଣ୍ଡା ଯେଉଁଠା ଗଲେ ସେଠାରେ, ଯେଉଁଠା ଗଲେ ସେଠାରେ ଅଣେ, ତାଙ୍କୁ ବିରସ୍ତ ଭାରିଯା ଖାଇ ପିଇ ସୁଖରେ ଥାନ୍ତି । ଦିନକରେ ଚକୁଳିଆପଣ୍ଡା ନଈକୁ ଗାଧୋଇ ଯାଇଥିଲେ, ନାଗଲୋକର ରାଜାରପୁଅ ହଳାହଳକୁମରର ମଣ୍ଡ ଦେଖିବାକୁ ବଡ଼ ଇଚ୍ଛା; ସେ ନଈରେ ସାପଛୁଆଟିଏ ହୋଇ ଖେଳୁଥିଲା, ଚକୁଳିଆପଣ୍ଡାର ହାତରେ ପଡ଼ିଲା ଘରକୁ ଆସିଲା । ଚକୁଳିଆପଣ୍ଡାର ଭାରିଯା ପାଣି ଢାଳିଲାବେଳେ ଦେଖିଲା ଯେ ସାପଛୁଆଟି ଗୋଟିଏ ଉତ୍ତମ ସୁନ୍ଦର ବାଳକଟିଏ ହୋଇ ଢାଳରେ ଅଛି । ଚକୁଳିଆପଣ୍ଡା ଦେଖିଲେ, ଦିହେଁଯାକ ବଡ଼ ଖୁସି ହେଲେ, ପିଲାଟିକୁ ଆପଣାର ପୁଅକରି ପାଳିଲେ । ପୁଅଟିର ନାଁ ଦେଇଥାନ୍ତି ଅଭିମନ୍ୟୁ । ପୁଅଟି ବଡ଼ ହେଲା, ତାକୁ ଚାଟଶାଳରେ ପାଠ ପଢ଼ିବାକୁ ପଠାଇଲେ । ସେହି ଚାଟଶାଳରେ ରାଜାଝିଅ ଶଶିସେନା ପଢ଼ୁଥାଏ । ଦିନକର ଅଭିମନ୍ୟୁର ଖଡ଼ୀ ସରିଗଲା ଶଶିସେନା ଆଗକୁ । ଏ କହିଲା ହେ ଶଶିସେନା ! ଟିକିଏ ଖଡ଼ୀ ଦେବୁଟି ? ଶଶିସେନା କହିଲା ତୁ ସତ୍ୟ କର ଖଡ଼ୀ ଦେବି, ଅଭିମନ୍ୟୁ କହିଲା ହେ ହୋ ଖଡ଼ୀ, ସତ୍ୟ ଗୋଟାଏ କଣ ? ଏ କହିଲା ନା, ତୁ ସତ୍ୟ ନକଲେ ମୁଁ କେଭେ ଖଡ଼ୀ ଦେବ ନାହିଁ । ଅଭିମନ୍ୟୁ କହିଲା ହଁ, ମୁଁ ସତ୍ୟ କଲି ଖଡ଼ୀ ଦେ, ଏ ସେଉଠୁଁ ଖଡ଼ୀ ଦେଲା । ଚାଟଶାଳ ଛୁଟି ହେଲା, ଯେ ଯାହା ଘରକୁ ଗଲେ । ତହିଁ ଆରଦିନ କେହି ଆସିନାହାନ୍ତି, ଏକା ଶଶିସେନା ଚାଟଶାଳରେ ଅଛି, ତେଣୁ ଅଭିମନ୍ୟୁ ଆସିଲା ଶଶିସେନାର ଅଞ୍ଚିକି ଭୁଜ ଧଇଲା, ଖୁବ୍ କଟମଟ କରି ଭୁଜ ଧଇଲା, କହିଲା କାଲି କାହିଁକି ସତ୍ୟ କରାଇଥିଲୁ କହ । ଶଶିସେନା କହିଲା ମତେ ତେମେ ବାହା ହେବ, ଅଭିମନ୍ୟୁ କହିଲା ହଉ ମାତ୍ର ଆମର ଏ ରାଜ୍ୟରେ ଆଉ ରହିବା ନାହିଁ । ଶଶିସେନା କହିଲା ହଉ ଚାଲ ଯିବା ଆଉ କେଉଁ ଦେଶକୁ । ତାଲେ ଘୋଡ଼ାଶାଳରୁ ଗୋଟିଏ ମହିଆ ଘୋଡ଼ାଟିଏ ବାହାରିଥିଲା ଆଣିଲେ, ଛଟ ଥାଣିଲେ,

ବାରହାତ ଖଣ୍ଡା ଆଣିଲେ, ଦୁହେଁଯାକ ଘୋଡ଼ାରେ ବସିଲେ, ଚଳେ । ଯାଉଛନ୍ତି, ବାଟରେ ଗୋଟାଏ ଠେକୁଆଲାଙ୍ଗୁଡ଼ ପଡ଼ିଛି, ସେ କହିଲା ମତେ ସାଙ୍ଗରେ ନିଅ ତମର ବଡ଼ ଉପକାରରେ ଆସିବି । ଶଶିସେନା କହିଲା ହଉ ଆଣ । ତାକୁ ଆଣିଲେ, ଘୋଡ଼ା ଲାଙ୍ଗୁଡ଼ରେ ବାନ୍ଧି-ଦେଲେ, ନେଇକରି ଚଳେ । ଫେର୍ ଆଉ କେତେଦୂର ଯାଇଛନ୍ତି, କୁଳି ବାଉଁଶିଆ ଗୁଡ଼ାଏ ଯାଉଛି ବିକା ହେବାକୁ, ଠେକୁଆଲାଙ୍ଗୁଡ଼ କହିଲା ଅଭିମନ୍ୟୁ ! ଏଥିରୁ ହଟା ନିଅ, ବହୁତ ଉପକାରକୁ ଆସିବ, କୁଳି ବାଉଁଶିଆ ହଟା ନେଲେ । ଆଉ କିଛିଦୂର ଯାଇଛନ୍ତି, ଲଙ୍ଗଳ ଲୁହାଟାଏ ବାଟରେ ପଡ଼ିଛି, ଠେକୁଆ ଲାଙ୍ଗୁଡ଼ କହିଲା ଅଭିମନ୍ୟୁ ! ଏଇଟାକୁ ନିଅ ବହୁତ ଉପକାର କରିବ । ତାକୁ ନେଲେ, ଯାଇ ଗୋଟିଏ ବୁଢ଼ୀ ଅସୁରୁଣୀ ଦୁଆରେ ରାତି ହେଲା, ସେଇଠି ରହିଲେ । ବୁଢ଼ୀ ଅସୁରୁଣୀ ବଡ଼ ଆଦର କଲା, ଗୋଟାଏ ଘରେ ନେଇ ଏମାନଙ୍କୁ ରଖାଇ ଦେଲା । ଏମାନେ ଆଉ ଜାଣନ୍ତି ନାହିଁ ଅସୁର ଘର ବୋଲି । ଅଛନ୍ତି, ଅସୁରୁଣୀର ପୁଅଯାକ ବୁଲି ଯାଇଥିଲେ, ସଞ୍ଜକି ସମସ୍ତେ ଆସିଲେ । ବୁଢ଼ୀ ଅସୁରୁଣୀ କହିଲା ଆଜ ତମପାଇଁ ଅତି ସୁନ୍ଦର ଦରବ ରଖିଛି, ସଭ ଭାଇଯାକ ଆନନ୍ଦରେ ଖାଇବ । ଏ ସବୁ କହିଲେ କହିଁ, ବୁଢ଼ୀ ଅସୁରୁଣୀ କହିଲା ଆରଘରେ ଅଛନ୍ତି । ଏମାନେ ଦଉଡ଼ିଲେ, ସେ ଘରେ ଅଭିମନ୍ୟୁହେବଳ । କବାଟ କିଳି ନିଦମ ହୋଇ ଶୋଇଛନ୍ତି । ଏ ପଚାରିଲେ ତେମେ କିଏ ? ଠେକୁଆ ଲାଙ୍ଗୁଡ଼ କହିଲା ଆମେ ଅସୁରଙ୍କ ଶଶୁର । ଏ ସବୁ ଡରିଲେ, ବିଚ୍ଛ-ରିଲେ ଆମେତ ଅସୁର, ଆମର ଗୋଟାଏ ଶଶୁର କୋଉଠୁ ଆଇଲା ? କହିଲେ ଆଚ୍ଛା ହଉ ତେମେ ଯେବେ ଅସୁରଙ୍କ ଶଶୁର ହେବେ ତମ କେଶ କାହିଁ ଦେଖାଅ ? ଠେକୁଆଲାଙ୍ଗୁଡ଼ କୁଳିଟାକୁ ଦେଖାଇଦେଲା । ତମ ପାଟି କାହିଁ ଦେଖାଅ ? ଏ ବାଉଁଶିଆକୁ ଦେଖାଇ ଦେଲା, ତମ ଦାନ୍ତ କାହିଁ ଦେଖାଅ ? ଏ ଲଙ୍ଗଳଲୁହାଟାକୁ ଦେଖାଇଦେଲା ।

ଅସୁରରାଜ ଡରିକରି ରହିଲେ, କହିଲେ ଯେ କାଲେ ଆମର ଶଶୁର
ହୋଇଥିବେ । ରାତିରେ ଖାଇପିଇ ଶୋଇଲେ, ଏମାନଙ୍କ ନିଦ ବାଗ
ଦେଖି ଅଲଙ୍ଗୁଡ଼ି ଅଭିମନ୍ୟୁ ଶଶିସେନାକୁ ଉଠାଇ ସବୁକଥା କହିଲା,
ଏମାନେ ରାତିରାତି ଘୋଡ଼ାରେ ବସି ଗଲେ ବାହାରି । ସକାଳ
ହେଲାରୁ ଅସୁରମାନେ ଦେଖନ୍ତି ଯେ କେହି ନାହିଁ । ବୁଢ଼ୀ ଅସୁରୁଣୀ
କହିଲା ଦେଖିଲ, ଏ ଦିବ ଶଡାକାଙ୍କ ଗୁଣ୍ଡଗଲେ, ଯାଅ ମୁଁ ଘୋଡ଼ା
ଲଙ୍ଗୁଡ଼ରେ ସୋରିଷ ବାନ୍ଧିଦେଇଚି, ସୋରିଷ ବୁଣି ବୁଣି ଯାଉଥିବ, ଗଛ
ଉଠି ଉଠି ଯାଉଥିବ; ଫୁଲ ଫୁଟି ଫୁଟି ଯାଉଥିବ; ଦେଖିବ ସେମାନେ ସେହି-
ବାଟେ ଯାଉଥିବେ । ଅସୁର ସାତଭାଇ ଦଉଡ଼ିଲେ ସେହି ବାଟେ ଦେଖି
ଦେଖି କି । ପାଖରେ ଦିଶିବାକୁ ଅଳପ ବାଟ ଅଛି ଶଶିସେନା ଅନାଇ
ଦେଲା, ଦେଖିଲାବେଳକୁ ଅସୁରେ ଗୋଡ଼ାଇଚନ୍ତି । ଅଭିମନ୍ୟୁକୁ
ଦେଖାଇ ଦେଲାରୁ ଅଭିମନ୍ୟୁ କଣ କଲା ଗୁଡ଼ାଏ ବେତମଞ୍ଜି ବୁଣି-
ଦେଲା ଯେ ବେତବଣ ହୋଇଗଲା । ଅସୁର ତାକୁ ମାନିଲେ ନାହିଁ,
ମାଡ଼ିଦେଇଗଲେ । ଅଭିମନ୍ୟୁ ପଛକୁ ଅନାଇ ଦେଖେ ଯେ ଅସୁର
ଗୋଡ଼ାଇ ଆସୁଛନ୍ତି । ସେ ସେଉଠୁ ଗୁଡ଼ାଏ ଅଙ୍ଗାର ବୁଣି ଦେଇ କହିଲା
ଯେବେ ସତ୍ୟଯୁଗ ହୋଇଥିବ, ଖାଲି ଅଗ୍ନିମୟ ହୋଇଯିବ । ସବୁ
ଅଗ୍ନିମୟ ହୋଇଗଲା, ଅସୁର ନିଆଁକୁ ମାନିଲେ ନାହିଁ ମାଡ଼ି—ଦେଇ
ଚାଲିଗଲେ, ତାଙ୍କ ପଛକୁ ପଛକୁ ଲାଗିଗଲେ । ଅଭିମନ୍ୟୁ ସେଉଠୁ କଣ କଲା,
ପଛକୁ ଅନାଇଁ ଫୁଙ୍କରି ଫୁଙ୍କିଦେଲା ଯେ କୁହୁଡ଼ି ଘୋଟିଗଲା, କାହାକୁ
ବାଟ ଦିଶିଲା ନାହିଁ । ଅସୁର ମନଷଗନ୍ଧ ସୁଙ୍ଘି ସୁଙ୍ଘି ଘୋଡ଼ାଙ୍କ ପଛକୁ ଲାଗି-
ଗଲେ । ଅଭିମନ୍ୟୁ କହିଲା ମୋର ଆଉ ଦୋଷ ନାହିଁ, ଏହା କହି
ବାରହାତ ଖଣ୍ଡାକୁ ବୁଲାଇଦେଲା ଯେ ଅସୁରରାଜ ଛଅଜଣ କାଟି
ହୋଇଗଲେ; ସେକା ସବା ସାନଭାଇ ଠିମାଅସୁର ଠି ଘୋଡ଼ା ପେଟତଳେ
ଲୁଚିଗଲା । ଠିମାଅସୁର ବାହାରିପଡ଼ି କହିଲା ହେ ମତେ ମାରନା, ମୁଁ
ତମର ଭଣ୍ଡାରି ହୋଇ ତମ ପାଖରେ ରହିବି । ଶଶିସେନା କହିଲା ଦଉ

ଥାଉ; ନଥ ତାକୁ ମାରନା । ତାଙ୍କୁ ସଙ୍ଗରେ ନେଲେ, ଯାହା କୋଣ୍ଟଏ ନିର୍ଜନ ଥାନରେ ଯୋଜନ କୁଅଁ କୋଇଲିର ରବ ନାହିଁ, ମନୁଷ୍ୟର ଠାବ ନାହିଁ ସେଇଠି ପହଞ୍ଚିଲେ, ସେଇଠି ବସାକରି ରହିଲେ । ଶଶିସେନା ରୋଷେଇ ବାସ କଲା, କୁମାଅସୁର ତେଲ ନେଇ ଗଲା ଅଭିମନ୍ୟୁ ଗାଧୋଇବ ବୋଲି । ଅଭିମନ୍ୟୁ କେତେବେଳେ ବାଁହାତ ଖଣ୍ଡା ହାତରୁ ଛାଡ଼େ ନାହିଁ । କୁମାଅସୁର ତେଲ ଲଗାଇ ଦେଉ ଦେଉ କହିଲା, ସବୁବେଳେ କାହିଁକି ଖଣ୍ଡାଟା ହାତରେ ଧରିଥାଅ ? ରଖିଦିଅ, ମୁଁ ଭଲକରି ତେଲ ଲଗାଇ ଦିଏ । ଅଭିମନ୍ୟୁ ଖଣ୍ଡା ଥୋଇ ଦେଲା । କୁମାଅସୁର ତେଲ ଲଗାଇ ଦେଉଛି, ଜଣ ମନେ ବିଚାରିଲା, ଅଭିମନ୍ୟୁକୁ ହାଣି ପକାଇଲା । ହାତଗୋଡ ହାଡ଼କୁ ପୋତିପକାଇଲା, ଗଣ୍ଡିକୁ ଗିଳିଦେଲା, ଟିକିଏ ହୋଇ ଘସିପସି ହୋଇ ଗାଧୋଇ ଆସିଲା, ଅଭିମନ୍ୟୁର ଲୁଗାକୁ ପିନ୍ଧିଲା; ଗାମୁଛା କାନ୍ଧରେ ପକାଇଲା, ଖଣ୍ଡାକୁ ହାତରେ ଧରିଲା, ଅଭିମନ୍ୟୁ ବେଶଧରି ଗଲା ଶଶିସେନା ପାଖକୁ । ଶଶିସେନା ଆଉ ଜାଣେ ନା କୁମାଅସୁର ଛଦ୍ମବେଶ ଧରିଛି, ତାକୁ ଭାତ ବାଢ଼ି ଦେଲା, ଅଭିମନ୍ୟୁ ଯେତିକି ଖାଏ ସେତିକି ଦେଲା । ଏତ ଅସୁରଟାଏ, ମୁଁ ପେଟ କୋଉଠି ପୂରୁଛି ? ଶଶିସେନା ଯେତେ ଦେଉଥାଏ ପତ୍ରରେ, ଏ ଥଉ ନାହିଁ କରୁ ନ ଥାଏ, ସବୁ ଖାଉଥାଏ । ଶଶିସେନା ମନେ ହେଉଥାଏ ଅଜ କାହିଁକି ଏତେ ଖାଉଛନ୍ତି । ଏହିପରି ଭାବି ହେଉଥାଏ, ଅଜ ପିଠେଇ କରି କିଛି କହୁ ନ ଥାଏ । ଯେତେ ହାଣ୍ଡି ଭାତ ରୋଷେଇ କରି ଦେଲା ଏ ସବୁ ଖାଇଲା । କେତେବେଳକେ ଉଠିଲା ଖାଇବାଠାରୁ । ଶଶିସେନା ମନରେ ହୋହୋ ପାଣ ହେଉଥାଏ, ସେ ପଚାରିଲା କୁମାଅସୁର କାହିଁକି ? ଅଭିମନ୍ୟୁ ବେଶଧାରୀ କୁମାଅସୁର ମୁରୁକିହସା ଦେଇ କହିଲା, ମୁଁ ପରା କୁମାଅସୁର । ତମ ଅଭିମନ୍ୟୁ ନଈରେ ବୁଡ଼ି ମରିବାରୁ ମୁଁ ପରା ତାଙ୍କ ଲୁଗାପଟା ପିନ୍ଧି ଆସିଛି ! ଶଶିସେନା ଅଭିମନ୍ୟୁର ବାଉହାତ ଖଣ୍ଡାଧରି କହିଲା

ଅଭିମନ୍ୟୁ କୋଉଠି ମରିଚି ଦେଖା, ନଇଲେ ଏହି ଖଣ୍ଡାରେ ତୋର ପ୍ରାଣ ନେବି । ହିମାଅସୁର ଉପରେ ଯୋଉଠି ଗୋଡ଼ହାତ ପୋତିଥିଲା ଦେଖାଇ ଦେଲା । ଶଶିସେନା କହିଲା ଏ ସିନା ହାତଗୋଡ଼, ମୁଣ୍ଡ କାହିଁ ? ହିମାଅସୁର ମୁଣ୍ଡିକି ବାହାର କରି ଦେଲା । ଶଶିସେନା ଅଭି-ମନ୍ୟୁର ଗୋଡ଼ହାତ ମୁଣ୍ଡ ସବୁ ଏକାଠି ଯୋଖି ଦେଲା, ସେଇଠି ବସି କାନ୍ଦିଲା । କାନ୍ଦି ରାତ ଅଧରୁ ବଳିଲାଣି, ଗଛଅଡ଼େ ପକ୍ଷୀ ଶବ୍ଦ ହେଲେଣି, ଈଶ୍ୱର ପାର୍ବତୀ ଆକାଶରେ ଉଡ଼ି ଯାଉଥିଲେ, ପାର୍ବତୀ କହିଲେ ରହିଥିବେଟି, ମଝିରେ କିଏ ଗୋଟିଏ କାନ୍ଦୁଛି । ଈଶ୍ୱରକହିଲେ ଚାଲଯିବା ବାହାର, ଆମର ସେଥିରେ କଣ ଅଛି । ପାର୍ବତୀ କହିଲେ କିଛିତ ବୁଝିବ ନାହିଁ, ଏ ସୃଷ୍ଟି ତୁମ ଭିତର କାହିଁକି ? ଈଶ୍ୱର ପାର୍ବତୀ ଗଲେ, ଶଶିସେନାକୁ ପଚାରିଲେ ତୁ କିଏ, ଭୂତ କି ପ୍ରେତ କି ଡାହାଣୀ କି ଚିରୁଗୁଣୀ କି କିଏ, ତୁ କାହିଁକି ବସି କାନ୍ଦୁଚୁ ? ଏ କହିଲା, ମୁଁ ଭୂତ କି ପ୍ରେତ କେହି ନୁହେଁ, ଏମନ୍ତ ରାଜାଝିଅ, ଅଭିମନ୍ୟୁ ସଙ୍ଗରେ ଆସି-ଥିଲି, ତାକୁ ହିମାଅସୁର ମାରିପକାଇଚି, ଆଦ୍ୟରୁ ପ୍ରାନ୍ତପର୍ଯ୍ୟନ୍ତ ଏହିସବୁ ସବୁ କହିଗଲା । ଈଶ୍ୱରପାର୍ବତୀ କହିଲେ ହଉ ତେବେ ଟିକିଏ ମୁହଁବୁଲା, ଫୁଲପାଣି କରି ଛିନମୁଠା ଛିଞ୍ଚିଦେଲେ ଯେ ଅଭିମନ୍ୟୁ ଜୀଇଉଠିଲା, ଈଶ୍ୱରପାର୍ବତୀ ଅନ୍ତର୍ଦ୍ଧାନ ହୋଇଗଲେ । ଶଶିସେନା ଅଭିମନ୍ୟୁକୁ ହିମା ଅସୁର ଯାହା କରିଥିଲା ସବୁ କହିଲା । ଅଭିମନ୍ୟୁ କହିଲା ଆଉ ସ୍ନାକୁ ବିଶ୍ୱାସ ନାହିଁ, ସ୍ନାଛଭାଇ ସ୍ନାକୁ ଖୋଜିଲେଣି, ଏହା କହି ତାକୁ ସେଇଠି ହାଣି ପକାଇଲେ, ଆଉ ସେଠାରେ ରହିଲେ ନାହିଁ, ଗଲେ, ଯାଇ ଗୋଟିଏ ରଜା ଦେଶ ର ପହଞ୍ଚିଲେ । ଗୋଟାଏ ଆମ୍ବଗଛ ମୂଳେ ବସିଛନ୍ତି, ଅଭିମନ୍ୟୁକୁ ଶୋଷ କଲା, ଶଶିସେନାକୁ ସେଇଠି ବସାଇ ଦେଇ ଚାଲିଗଲା ଗାଁ ଭିତରକୁ ପାଣି ପିଇବାକୁ । ଅଭିମନ୍ୟୁ ଯାଉଚି ଗୋଟାଏ ଜ୍ଞାନଦେଇ ମାଲୁଣୀ ତାକୁ ଡାକିନେଲା ଘରକୁ, ଗୋଟିଏ ଜଳାଙ୍ଗୁଳି ଶୁଙ୍ଘାଇ ଦେଇ ତାକୁ ଛାଳିଅମେଣ୍ଢା କରିଦେଲା, ରଖିଲା । ଶଶିସେନା

ଅନାଇଁ ୨ ଯାଉଁ ଅଭିମନ୍ୟୁ ନ ଆସିଲା, ସେ ଖୋଜିବାକୁ ଗାଁଭିତରକୁ । ଏଣେ ସହର ଭିତରେ ଢେଣ୍ଡୁରା ଦିଆହେଉଛି ଯେ ସେ ରାଇଜରେ ଗଣ୍ଡାଗସୃଲ ମାଡ଼ିଛି, ଯେ ଗସୃଲକୁ ମାରିଦେବ ସେ ରଜାଝିଅକୁ ବାହାହେବ । ଶଶିସେନା ଗୋଟିଏ ମରଦ ବେଶ ଧରିଲା, ଆଉ ଅନେକ ରଜା ଅଉ ୨ ଦେଶରୁ ଆସିଥାନ୍ତି, ସେ ସବୁ ଯାଉଥାନ୍ତି ଗଣ୍ଡାଗସୃଲ ମାରିବାକୁ, ଶଶିସେନା ତାଙ୍କ ପଛେ ୨ ଘୋଡ଼ାରେ ଚଢ଼ି ଗଲା । ସମସ୍ତେ ଯାଇ ଗଣ୍ଡାଗସୃଲ ବନସ୍ତରେ ପହଞ୍ଚିଲେ । ଶଶିସେନା ଠାରେ ବାରହାତ ଖଣ୍ଡା ଥାଏ, ଦୂରରୁ ତାକୁ ବୁଲାଇ ୨ ଫିଙ୍ଗିଲା ଯେ ଗଣ୍ଡାଗସୃଲ ଦୁଇଖଣ୍ଡ ହୋଇପଡ଼ିଲା । ଏ ଦଉଡ଼ିଯାଇ ଗଣ୍ଡା-ଗସୃଲର ଜିଭ ନଖ କାଟିଆଣିଲା, ଆଉ ସବୁ ରଜାମାନେ ଫେରି ଆସିଲେ । ଶଶିସେନା ଗଣ୍ଡାଗସୃଲର ଜିଭ ନଖ ରଜାଙ୍କ ଆଗେ ଥୋଇ ଦେଲା, ରଜାଝିଅକୁ ତାକୁ ବାହା କରିବାର ସ୍ଥିର କଲେ । ବାହା-ଘର ଯୋଗାଡ଼ ହେଉଥାଏ, ଶଶିସେନା କହିଲା, ମୋର ଗୋଟିଏ ବ୍ରତ ଅଛି ବରଷେ, ମୁଁ ତାକୁ ପୂରଣ କରି ସାରିଲେ ବାହା ହେବି, ବାହାଘର ବନ୍ଦ ରହିଲା । ଶଶିସେନା ମରଦବେଶ ଧରି ରଜାଘରେ ଥାଏ, ମନେ ୨ ଅଭିମନ୍ୟୁକୁ ଖୋଜୁଥାଏ । ଅନେକଦିନ ବିତିଗଲା, ଅଭିମନ୍ୟୁର କିଛି ଖୋଜଖବର ମିଳିଲାନାହିଁ । ଶଶିସେନା ଗୋଟିଏ ବୁଦ୍ଧି ପାଞ୍ଚିଲା, ବରଷପୂରିବାକୁ ଦଶ ପନ୍ଦର ଦିନ ଅଛି, ରଜାଙ୍କୁ କହିଲା ଏଠାରେ ଯୋଉ ମହାଦେବ ଅଛନ୍ତି, ତାଙ୍କଠାରେ ବାରୁଣୀବୁଡ଼ ପଡ଼ିବ, ଢେଙ୍ଗୁରା ପିଟାଇ ଦିଅ ଯେ ଏ ରାଇଜରେ ଯେତେ ଲୋକ ଅଛନ୍ତି ସମସ୍ତେ ଆସିବେ ବୁଡ଼ ପକାଇବାକୁ । ରଜା ସେହିପରି କରାଇଦେଲେ ଯୋଉଦିନ ବୁଡ଼ ପଡ଼ିବ ସେଦିନ ସକାଳୁ ଶଶିସେନା ଗାଧୋଇ ଆସି ଘୋଡ଼ାରେ ଚଢ଼ି ଦେଉଳ ଚାରିପାଖେ ପୋଖରୀ ଚାରିପାଖ ବୁଲୁଥାଏ, ଅଭିମନ୍ୟୁ ଆଗରୁ ଶୁଣିଥାଏ ଯେ ଜଣେ କିଏ ବାରହାତ ଖଣ୍ଡାରେ ଗଣ୍ଡାଗସୃଲ ମାରି ରଜାଝିଅକୁ ବାହା ହେବ ବୋଲି ତାଙ୍କ ଘରେ

ଅଛୁ, ସେ ଏ ବାରୁଣୀବୁଡ଼ କରଉଚ । ମନେ୨ ଭାବୁଥାଏ ଶଶିସେନା କଣ ଛଦ୍ମ ବେଶରେ ଏପରି କରୁଛି ? ସେ ଦିନ ଅଭିମନ୍ୟୁ କହିଲା ମାଲୁଣୀକି, ମାଉସୀ ! ସମସ୍ତେ ବାରୁଣୀକି ଯାଉଛନ୍ତି, ମୁଁ ହି କିଏ ଯାନ୍ତି । ମାଲୁଣୀ କହିଲା ନା ତୁ କୋଉଠିକି ଯିବୁ ? ଅଭିମନ୍ୟୁ ଯାଉଁ ଏକଜିଦ୍ ଲଗାଇଲା, ମାଲୁଣୀ ତାକୁ ଗୋଟାଏ ମାଇପୀ ବେଶକରି ଘାଟରେ ନେଲା । ଅଭିମନ୍ୟୁ ବୁଡ଼ ପକାଇଲା, ଗଲା ଦେଉଳ ଭିତରକୁ ଦର୍ଶନ କଲା । ସେହି ଦେଉଳ ଭିତରେ ଲେଖି ଦେଇଗଲା—

ଶଶିସେନା ବାଳୀ ମନରେ ଭାବଲେଣି ଅଭିମନ୍ୟୁ ତାର ବର,
ଛଳନା ମାଲୁଣୀ ବନ୍ଦୀ କରିଅଛି ଦିନେ କରେ ମେଷକର ।
ରାତିରେ ଧବଳ ପୁଷ୍ପ ସୁଙ୍ଘାଇଣ କରଇ ଭେଣ୍ଡା ସୁନ୍ଦର,
ଏଥିରୁ ମୁକତ କରିପାରୁ ଯଦି ଶଶିସେନା ବେଗେ କର ।

ଅଭିମନ୍ୟୁ ତ ସ୍ତ୍ରୀଙ୍କ ବେଶ ହୋଇଚି, ଶଶିସେନା ବୁଲି୨ ଆଉ କୁଠିଠେଇଁ ତାକୁ ପାଇଲା ନାହିଁ । ଦେଉଳଭିତରେ ଗୁଡ଼ାଏ କଣ ଲେଖା ହୋଇଚି ବୋଲି ପଢ଼ିଲାବେଳକୁ ଅଭିମନ୍ୟୁର କଥା ସବୁ ଲେଖା ହୋଇଛି । ଶଶିସେନା ତହିଁ ଆରଦିନ ମାଲୁଣୀକି ଆଉ ତାର କାଳିଆ ମେଣ୍ଢାକୁ ଘେନାଇ ଆସିଲା, ମାଲୁଣୀକି କହିଲା ତାକୁ ମଣିଷ କରିଦେ, ମାଲୁଣୀ କହୁଥାଏ ମେଣ୍ଢାଟା କିପରି ମଣିଷ ହେବ ? ଆଉ କିଛି କହୁ ନ ଥାଏ । ଯଉଁ ମାଲୁଣୀକି ବେଳୁଅଛିରେ ଗୁଡ଼ାଏ ମାଡ଼ ହେଲା, ମାଲୁଣୀ ଧଳାଫୁଲ ସୁଙ୍ଘାଇ ଅଭିମନ୍ୟୁକୁ ନିଜରୂପ କରିଦେଲା । ରଜା ସବୁକଥା ଜାଣିଲେ, ମାଲୁଣୀକି ଶୂଳିଆ ପଦାରେ ଶୂଳିଦେଲେ, ତା ଘରେ ଯେତେ ଧନ ଦରବ ଥିଲା ତାକୁ ନଅରକୁ ଘେନି ଆସିଲେ । ଶଶିସେନା ରଜାଙ୍କ ହାତ ଧରି ପକାଇଲା, କହିଲା ମୁଁ ଆପଣଙ୍କର ଧର୍ମଝିଅ ହେଲି । ଆଜଠାରୁ ଆପଣଙ୍କ ଝିଅକୁ ଆଉମୋତେ ଅଭିମନ୍ୟୁକୁ ବାହାକରିଦିଅନ୍ତୁ । ରଜା ବଡ଼ ଖୁସିହେଲେ, ଶଶିସେନାକୁ ଆଉ ହେମାକୁ

ଅଭିମନ୍ୟୁକୁ ବିଭା କରିଦେଲେ । ଏମାନେ ତିନିହେଁ ଆନନ୍ଦରେ ରହିଲେ । ଏହିପରି ଥାନ୍ତି, ଏଣେ ଅଭିମନ୍ୟୁର ନାଗଲୋକର ଭାଉ-ଯାମାନେ ଭାଉ ଭାବନାରେ ଥାନ୍ତି, ଏ ତ ନରଲୋକକୁ ଯାଇ ସୁଖରେ ରହିଲେ, ଆଉ କଣ ଆସିବେ କି ? ସମସ୍ତେ ବିଚାର କଲେ, ଜଣେ ତାଙ୍କ ଭିତରୁ ଗୋଟିଏ ଶବରୀବେଶ ହୋଇ ଗୁଡ଼ିଏ ଅମରଫଳ ଟୋକାଇରେ ଘେନି ଅଭିମନ୍ୟୁ ଶଶିସେନା ଯୋଉଠି ଅଛନ୍ତି, ସେଇ ଗାଁକୁ ଆସିଲା ଅଭିମନ୍ୟୁର ଦୁଇ ଭାରିଯାଙ୍କ ପାଖକୁ । ଏମାନେ ତ ଦୋଟି ଅମରଫଳ ମାଗିଲେ କିଣିବାକୁ, ଯୁଆଙ୍କପାଇଁ ଦୋଟି ଅଭିମନ୍ୟୁ ପାଇଁ ଗୋଟିଏ, ଶବରୀ କହିଲା ଅଭିମନ୍ୟୁତ ଅମର ତାଙ୍କର ଫଳ କଣ ଦେବ ? ଏହା କହି ଦୋଟି ଫଳ ଦେଲା, ଏମାନେ ପଚାରିଲେ ଅଭିମନ୍ୟୁ ଅମର କେମନ୍ତ ଆମକୁ କହ । ଶବରୀ କହିଲା ତାଙ୍କୁ ପଚାରିବ ସେ ସବୁ କହିବେ, ଏହାକହି ଚାଲିଗଲା । ଯୁଆଙ୍କର ମନ ଲାଗିଲା, ସେ ଦିନ ଅଭିମନ୍ୟୁକୁ ତାର ନିଜ ନା କଣ ପଚାରିଲେ । ଅଭିମନ୍ୟୁର ନାଗ-ଲୋକ କଥା ମନେ ପଡ଼ିଲା, ସେଠା ଭାରିଯାମାନେ ମନେ ପଡ଼ିଲେ, କହିଲା ମୋ ନାଆଁରୁ ତମେ କଣ ପାଇବ । ଏମାନେ ଏକଜିଦ୍ ଲଗାଇଲେ ଯୋଉଠୁ ଅଭିମନ୍ୟୁ କହିଲା ଆସ ମୋ ସାଙ୍ଗେ ନଈ କୂଳକୁ, ନାଆଁ କହିବି । ସମସ୍ତେ ଗଲେ, ଅଭିମନ୍ୟୁ ନଈରେ ଛାତିକ ପାଣିକି ଗଲା କହିଲା;—

କହ କହ ସୁନ୍ଦରୀ ଗୋ ମୋଠାରେ ଲୋଡ଼ା  
କିବା ମୋର ନାମେ ଅଛୁ ତୁମ୍ଭ ଶରଧା ।

ଏମାନେ କହିଲେ;—

ନ କରନ୍ତି ସ୍ୱାମୀ ଆମ୍ଭଠାରେ ଅବିଶ୍ୱାସ  
ନାମରେ ତୁମ୍ଭର ଆମ୍ଭେ ହୋଇବୁଁ ସନ୍ତୋଷ ।

ଅଭିମନ୍ୟୁ କହିଲା,—

ଯାଅ ଯାଅ ସୁଦଶା ଗୋ କରବ ଘର
ମୋ ନାଁ ନାଗଲୋକେ ହଳାହଳ କୁମର ।

ଏହା କହି ଅଭିମନ୍ୟୁ ବୁଡ଼ିଲା ଯେ ଆଉ ଉଠିଲା ନାହିଁ । ଶୁଣି ସେନା ଅଉ ସେ ରଜାଙ୍କ ଝିଅ ଭାଇବୋଲାଇ ହୋଇ ଅଭିମନ୍ୟୁ ଯୋଉଠି ବୁଡ଼ିଥିଲା ସେଇଠି ବୁଡ଼ିଲେ, ଅଭିମନ୍ୟୁ ସାଙ୍ଗେ ଯାଇ ନାଗଲୋକରେ ମିଳିଲେ । ସେଠାରେ ନାଗପତ୍ନୀମାନେ ସ୍ତ୍ରୀଙ୍କୁ ପାଖେ ପୁରାଇ ଦେଲେ ନାହିଁ । ଏମାନେ ଅପ୍‌ସରାଙ୍କ ସାଙ୍ଗେ ମିଶି ନୃତ୍ୟ କଲେ । ସବୁଦିନେ ଏହିପରି ନୃତ୍ୟ କରନ୍ତି, ଖୁବ୍ ଭଲ ସୁନ୍ଦର ନୃତ୍ୟ କରନ୍ତି, ଅଭିମନ୍ୟୁଙ୍କୁ ଦେଖାନ୍ତି ଆସନ୍ତି । ଦିନକର ନାଗରାଜା ବାସୁକୀ କହିଲେ, ଏ ଅପ୍‌ସରା ଯେଉଁଠି ଭଲ ନୃତ୍ୟ କରୁଛନ୍ତି, ସ୍ତ୍ରୀଙ୍କୁ ବିଦାକୀ କଣ ଦେଉଛ ? ସମସ୍ତେ କହିଲେ ନାହିଁ ସେ କିଛି ନେଉ ନାହାନ୍ତି । ନାଗରାଜା ଏ ଦୁହିଁଙ୍କି ଡକାଇଲେ ପଚାରିଲେ, ତୁମେ କଣ ନେବ ? ଏମାନେ କହିଲେ ଆମେ କିଛି ନେବୁଁ ନାହିଁ, ଆମକୁ ଏ ପୁରୁଷଟିଙ୍କୁ ଦିଅ, ଅଭିମନ୍ୟୁଙ୍କୁ ଦେଖାଇଦେଲେ । ନାଗପତ୍ନୀମାନେ ନାହିଁ କଲେ ଯୋଉଠୁ, ନାଗ-ରାଜା ଆଉ କିଛି କହି ନ ଥାନ୍ତି । ଏମାନେ ଅଳି ଲଗାଇଲେ ବାସ୍ତ, ବାସୁକୀ କହିଲେ, ହଉ ନିଅ, ଏ ନରଲୋକରେ ଛମାସ ରହିବ, ନାଗଲୋକରେ ଛ ମାସ ରହିବ । ଏ ଦିହେଁ ଅଭିମନ୍ୟୁଙ୍କୁ ସାଙ୍ଗରେ ଘେନିକରି ଆସିଲେ, ସୁଖରେ ରହିଲେ, ଘରଦୁଆର କଲେ, ମୁଁ ଗଲାକୁ କଥା ନ କହିଲେ । ମୋ କଥାଟି ସରିଲା; ଇତ୍ୟାଦି ।

# ଉଜ୍ଜ୍ୱଳବତୀ କନ୍ୟା କଥା ।

ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କୋଟୁଆଳପୁଅ ଏ ଚାରି ସଙ୍ଗାତ ପଶା ଖେଳୁଥିଲେ । ରଜାପୁଅ ହାରିଲା, କହିଲା ରହ ଆଉ ଦୀପ ଦହୁଡ଼, ମଶାଲ ଲଗାଇ ଖେଳିବା, ନ ଜିତିଲେ କେବେ ଉଠିବା ନାହିଁ । ଉଜ୍ଜ୍ୱଳବତୀ ଦେଶର ଗୋଟିଏ ବାହ୍ମଣ ଆସି ସେଠେଇଁ ବସିଥାଏ, ସେ କହିଲା, ଦୀପ ଦହୁଡ଼ି କଣ ? ରଜାପୁଅ ଦେହରକା କହିଲେ, ତମେ ଆଜଯାଏ ଦୀପ ଦହୁଡ଼ି କଣ ଜାଣନା ? ତାକୁ ସବୁ ବୁଝାଇ ଦେଲେ । ଏ ବ୍ରାହ୍ମଣ କହିଲା ଆମଦେଶରେ ଉଜ୍ଜ୍ୱଳବତୀ କନ୍ୟା ଯୋଗେ ଦୀପ ଜଳେ ନାହିଁ । ଏହା ଶୁଣି ରଜାପୁଅ ଉଜ୍ଜ୍ୱଳବତୀକି ଦେଖି ହେବାକୁ ବାହାରିଲା, ମନ୍ତ୍ରିପୁଅ ସାଙ୍ଗେ ତାର ମନ ମିଳେ, ତାକୁ ସାଙ୍ଗରେ ନେଇଗଲା । ଦୁହେଁଯାକ ଘୋଡ଼ା ଚଢ଼ି ଯାଉଛନ୍ତି, ବାଟରେ ଗୋଟାଏ ପଥର ଚକଡ଼ା ହୋଇଛି, ତା ଉପରେ ଦୁଇଜଣ ଚୋର ବସି କଜିଆ କରୁଛନ୍ତି । ସେ ଦିନ ସାଧବଘର ଚୋରି କରି ଆଣିଥାନ୍ତି; ଜଣେ କହୁଛି ମୁଁ ମୋହନମଣି, ମନପବନଖଣ୍ଡା ନେବି, ତୁ ଆଉ ସବୁ ପଦାର୍ଥ ନେ, ଆଉଜଣକ ବି ସେଇଆ କହୁଥାଏ । ଏହିପରି କଜିଆ କରୁଥାନ୍ତି, ଘଡ଼ି ପାହା ୨ ହେଲାଣି, ରଜାପୁଅ, ମନ୍ତ୍ରିପୁଅ ଘେରିକଲେ, ଜଣେ ଏ ପାଖରୁ ବୁଲିଗଲା, ଜଣେ ସେ ପାଖରୁ ବୁଲିଗଲା, ଏହିପରି ଚୋରଙ୍କୁ ଘେରିଗଲେ । ଚୋର ଯାଙ୍କୁ ଦେଖି ପଳାଇଗଲେ । ରଜାପୁଅ ମନ୍ତ୍ରିପୁଅ ମୋହନମଣି, ମନପବନଖଣ୍ଡା ରଖିଲେ । ଆଉ ସବୁ ଧନ ଯୋଉ ସାଧବ ଘରୁ ଚୋରି ଯାଇଥିଲା, ତାକୁ ଦେଇଦେଲେ, ଗଲେ, ଯାଇଁ ଉଜ୍ଜ୍ୱଳବତୀ ନଗରରେ ଗୋଟିଏ ଜ୍ଞାନଦେଈ ମାଲୁଣୀଘରେ

ରହିଲେ । ମାଲୁଣୀ ହାତେ ଫୁଲଗୁନ୍ଥା ଥିଲା, ମନ୍ତ୍ରିପୁଅ କହିଲା, ହଇଲୋ ମାଉସି । କାହାପାଇଁ ଫୁଲଗୁନ୍ଥୁଚୁ କହ ? ମାଲୁଣୀ କହିଲା, ଉଜ୍ଜ୍ୱଳବତୀ ପାଇଁ, ମନ୍ତ୍ରିପୁଅ କହିଲା, ମୁଁ ଖଣ୍ଡିଏ ଗୁନ୍ଥନ୍ତି ? ମାଲୁଣୀ କହିଲା ଅବୁଝିଁସ୍ବା ହେବ । ମନ୍ତ୍ରିପୁଅ କହିଲା ଅବୁଝିଁସ୍ବା ହେଲ ରଖିଦେବୁ, ସୁନ୍ଦର ହେଲେ ନେଇଯିବୁ । ମନ୍ତ୍ରିପୁଅ ଖଣ୍ଡିଏ ଗୁନ୍ଥିଲା, ମାଲୁଣୀ ଖଣ୍ଡିଏ ଗୁନ୍ଥିଲା, ମାଲୁଣୀ ଫୁଲଠାରୁ ମନ୍ତ୍ରିପୁଅ ଫୁଲଖଣ୍ଡି ସୁନ୍ଦର ହେଲା । ମାଲୁଣୀ କହିଲା ଏ ଫୁଲଖଣ୍ଡି ଦେଇ କାହାନାଆଁରେ କହିବ ? ମନ୍ତ୍ରିପୁଅ କହିଲା, କହିବୁ ମୋ ଝିଅଣୀ ଆସିଛି ସେହି ଗୁନ୍ଥିଛି । ମାଲୁଣୀ ହାତଖଣ୍ଡି ଯାକ ଫୁଲ ନେଇକରି ଗଲା, ଉଜ୍ଜ୍ୱଳବତୀ ପଚାରିଲା, ଏ ଫୁଲଖଣ୍ଡି କିଏ ଗୁନ୍ଥିଛି କହ ଲୋ । ମାଲୁଣୀ କହିଲା, ମୋ ଝିଅ ଗୁନ୍ଥିଛି । ଉଜ୍ଜ୍ୱଳବତୀ କହିଲା ତାକୁ ଟିକିଏ କାଲି ଏଠିକି ଆଣିବୁ, ଦେଖିବି । ତହିଁଅରଦିନ ମାଲୁଣୀ ମନ୍ତ୍ରିପୁଅକୁ ଖଣ୍ଡେ ଶାଢ଼ୀ ପିନ୍ଧାଇଦେଲା, ଖଡ଼ୁ ଯୋଡ଼ାଏ ଲଗାଇଦେଲା, ନେଇକରି ସାଙ୍ଗରେ ଗଲା । ଦ୍ୱାରୀମାନେ ପଚାରିଲେ, ଏ କିଏ ? ମାଲୁଣୀ କହିଲା ସେ ମୋ ଝିଅ । ତାକୁ ବାଟ ଛାଡ଼ିଦେଲେ, ସେ ଉଜ୍ଜ୍ୱଳବତୀକି ଦେଖିକରି ଆସିଲା । ମନ୍ତ୍ରିପୁଅ ଆସି ଉଜ୍ଜ୍ୱଳବତୀର ଗୋଟିଏ ଛବି ଲେଖି ରାଜାପୁଅକୁ ଦେଖାଇଲା । ରାଜାପୁଅ ଉଜ୍ଜ୍ୱଳବତୀର ଛବି ଦେଖି ମୋହ ହୋଇପଡ଼ିଲା । ମନ୍ତ୍ରିପୁଅ ତାକୁ ଚେତା କଲା ସେ ରାଜାପୁଅର ଆଉ ଚେତା ହେଲା ନାହିଁ । ମନ୍ତ୍ରିପୁଅ ତାକୁ କିଛି ନ କରି ତେଲକୁଅରେ ପକାଇ ରଖିଦେଲା । ସେ ଦେଶରେ ଗଣ୍ଡାଗଯୂଳ ବଡ଼ ଉତପାତ କରୁଥାଏ । ରାଜାଙ୍କର ଆଜ୍ଞା ହୋଇଥାଏ ଯେ ଗଣ୍ଡାଗଯୂଳକୁ ମାରିଦେବ ତାକୁ ଉଜ୍ଜ୍ୱଳବତୀ ବିଭା ହେବ । ବହୁତ ରାଜା ମାରିବାକୁ ଆସିଥାନ୍ତି । ସମସ୍ତେ ମାରିବାକୁ ଧାଇଁଚନ୍ତି, ଏ ମନ୍ତ୍ରିପୁଅ ସମସ୍ତଙ୍କ ପଛରେ ଗଲା, ଯାଇ ଗଣ୍ଡାଗଯୂଳ ବନସ୍ତରେ ପହଞ୍ଚିଲା । ମନ୍ତ୍ରିପୁଅ କଣ କଲା, ମନପବନଖଣ୍ଡାକୁ ଧରିଲା, କହିଲା

ସତ୍ୟଯୁଗର ଯେମନ୍ତ ମନପବନଖଣ୍ଡା ହୋଇଥିବ, ମୁଁ ପକାଇଦେଲାକ୍ଷଣି ଗଣ୍ଡାଗଯୂଳ ତନଗର ହୋଇ ପଡ଼ିଯିବ । ମନ୍ତ୍ରିପୁଅ ଏହା କହି ଖଣ୍ଡାକୁ ଛାଡ଼ିଲା ଯେ ଗଣ୍ଡାଗଯୂଳ ତନଗର ହୋଇ ପଡ଼ିଲା । ମନ୍ତ୍ରିପୁଅ ଦଉଡ଼ିଯାଇ ତାର ଜିଭ ନଖ କାଟିକରି ଘେନି ଅଇଲା । ଅଉ ରଜାଯାକ କଏ ଠିକିଏ ରକ୍ତ ଅଣ୍ଟା, କଏ ଟିକିଏ ରୁମ ଅଣିଚ ଏହିପରି ସବୁ ଅଣି ରଜାଙ୍କୁ ଯାଇ କହିଲେ, ମୁଁ ମାରିଚି ମୁଁ ମାରିଚି । ମନ୍ତ୍ରିପୁଅ ଜିଭ ନଖ ରଜାଙ୍କ ପାଖେ ନେଇ ଥୋଇଦେଲା, ରଜା କହିଲେ, ଏଇ ମୋ ଝିଅକୁ ବାଗ୍ଦା ହେବ । ମନ୍ତ୍ରିପୁଅ ମାଲୁଣୀଘରକୁ ଗଲା, ରଜାପୁଅକୁ ତେଲରୁ ବାହାର କରି ଭଲେ ଗାଧୋଇଦେଲା; ମୋହନମଣିରୁ ଟିକିଏ ଘୋରି ରଜାପୁଅ ପାଟିରେ ଦେଲାକ୍ଷଣି ରଜାପୁଅ ଜୀଇ ଉଠିଲା । ମନ୍ତ୍ରିପୁଅ ରଜାପୁଅକୁ ବର କରିଦେଲା, ବାଗ୍ଦା ହେବାକୁ ଘୋଡ଼ାଉପରେ ବସାଇଲା, ନିଜେ ଖଣ୍ଡାଇତ ହୋଇ ସାଙ୍ଗରେ ଗଲା ବର ଗଲା ରଜାଘରକୁ । ରଜାପୁଅ ଉତ୍କଳବତୀକି ବାଗ୍ଦା ହେଲା; ରଜା ଗୁଡ଼ାଏ ଖୁବ୍ ଦାନ ଯଉତୁକ ଦେଲେ, ରଜାପୁଅ ସବୁ ଘେନିକରି ଅସିଲା । ମନ୍ତ୍ରିପୁଅ ସାଙ୍ଗରେ ଥାଏ, ବାଟରେ ସେହି ପଥର ଚକଡ଼ାଠେଇଁ ରାତି ହେଲା, ସେଇଠି ସମସ୍ତେ ଶୋଇଲେ । ମନ୍ତ୍ରିପୁଅ ବରକନ୍ୟାଙ୍କ ପାଲିଙ୍କ ପାଖେ ଜଗିକରି ଶୋଇଥାଏ; ପ୍ରଥମ ପହର ରାତି ହେଇଚି, ଯୋଡ଼ାଏ ସ୍ତ୍ରୀପୁରୁଷ ବାହାରିଲେ । ସ୍ତ୍ରୀ କହିଲା ଅହା ! କି ସୁନ୍ଦର ସ୍ତ୍ରୀପୁରୁଷ ଯୋଡ଼ାଏ ଶୋଇଚନ୍ତି ! ପୁରୁଷ କହିଲା, ସୁନ୍ଦର ହେଲେ କଣହେବ, ପୁଅ ତ ମରିବ, ବୋହୂଟା ବିଧବା ହେବ । ସ୍ତ୍ରୀ କହିଲା, ଅହା ! ଏହା କାହିଁକି କହିଲ ? ପୁରୁଷ କହିଲା, ବାଟରେ ଯାଉଁ ଯାଉଁ ଗୋଟାଏ ଦେଉଳ ପଡ଼ିବ, ରଜାପୁଅ ପାଲିଙ୍କି ତା ପାଖରେ ଯିବାବେଳେ ଦେଉଳ ଭାଙ୍ଗି ପଡ଼ିବ, ସେ ତା ଉପରେ ପଡ଼ିବ । ଏଥିରେ କିଏ ଜଗି ଥାନ୍ତା, ସେବାଟରେ ନ ନେଇ ଅଉ ଗୋଟାଏ ବାଟରେ ବୁଲାଇ ନିଅନ୍ତା ଯେ ରଜାପୁଅ

ଭାଷିଲା । ଏହା ଯେ ଆଉ କାହାକୁ କହିବ ସେ ପଥର ହୋଇଯିବ । ଏହା କହି ସେ ସ୍ତ୍ରୀପୁରୁଷ ଦୋଟି ଉଡ଼ିଗଲେ । ଦ୍ୱିତୀୟ ପହର ଗଡ଼ରେ ଆଉ ଦୋଟି ସ୍ତ୍ରୀପୁରୁଷ ବାହାରିଲେ । ସେ ସେମନ୍ତ କଥା-ବାର୍ତ୍ତା ହେଲେ, ସୁନ୍ଦର ହେଲେ କଣ ହେବ, ପୁଅ ତ ମରିବ, ବୋହୂ ଥାଇକରି କଣ କରିବ ? ବରକନ୍ୟା ଘରପାଖରେ ହେଲାକ୍ଷଣି ବାପ କଣ କରିବ ପୁଅ ବଡ଼ ହୋଇ ଆସୁଛି ବୋଲି ଗୋଟାଏ ହଜାର ଟଙ୍କାର ଘୋଡ଼ା ଆଣି ଠିଆ କରିଦେବ । ସେଇଟା ତ ମରୁଥିଲା ଘୋଡ଼ା, ପୁଅ ଚଢ଼ିଲାକ୍ଷଣି ଘୋଡ଼ା ଫୋପାଡ଼ିଦେବ ଯେ ପୁଅଟି ମରିବ, ବୋହୂ ବିଧବା ହେବ, ଏଥିରେ କିଏ ଭେଦା ଥାନ୍ତା କି, ବାପ ଘୋଡ଼ା ଆଣି ଦେଲାକ୍ଷଣି ଏ ଯାଇଥାନ୍ତା, ଘୋଡ଼ା ଗୁରଡ଼ାପୁରୁ କରି ହାଣି ଦେଥନ୍ତା । ଏହା ଯେ ଆଉ କାହା ଆଗେ କହିବ ସେ ପଥର ହୋଇଯିବ । ଏହା କହି ସେ ଦହେଁ ଉଡ଼ିଗଲେ । ଗଡ଼ ତୃତୀୟ ପହର, ଆଉ ଦୋଟି ସ୍ତ୍ରୀ ପୁରୁଷ ବାହାରିଲେ, ସେହି-ପରି କଥାବାର୍ତ୍ତା ହେଲେ । ପୁରୁଷ କହିଲା ପୁଅବୋହୂ ଘରେ ପଶିଲାରୁ, ଯନ୍ତ୍ରୀଙ୍କୁ ନେଇ ଗୋଟିଏ ପଲଙ୍କ ଉପରେ ବସାଇବେ । ସେ ପଲଙ୍କରୁ ଦଶହାତ ଚୁଡ଼ପଡ଼ିବ ଯେ ପୁଅଟି ମରିବ, ବୋହୂ ବିଧବା ହେବ । ଏଥିରେ କିଏ ଭେଦା ଥାନ୍ତା କି, ସେ ପଲଙ୍କରୁ ଅଗକରି ଦଶହାତ ହାଣି ପକାନ୍ତା । ଏହା ଯେ କାହା ଆଗେ କହିବ ସେ ପଥର ହେବ । ଏହା କହି ସେ ଦହେଁଯାକ ଗଲେ ବାହାରି । ଚତୁର୍ଥ ପହରକୁ ଆଉ ଯୋଡ଼ିଏ ସ୍ତ୍ରୀ ପୁରୁଷ ବାହାରିଲେ । ସେ ସେମନ୍ତ କହିଲେ ଚତୁର୍ଥୀଦିନ ଏ ପୁଅବୋହୂ ଶୋଇଥିବେ, ନାଗନାଗୁଣୀ ଆସି ପୁଅକୁ ଦଂଶିଦେବ ଯେ ପୁଅ ମରିବ, ବୋହୂ ବିଧବା ହେବ । ଏଥିରେ କିଏ ଭେଦାଥାନ୍ତା କି ସେ ଦିନ ସେ ଘରେ ଲୁଚିକରି ଥାନ୍ତା, ନାଗନାଗୁଣୀଙ୍କି ହାଣି ପକାନ୍ତା । ଏହା ଯେ କାହା ଆଗେ କହିବ, ସେ ପଥର ହୋଇଯିବ, ଏହିପରି କହି ଉଡ଼ିଗଲେ । ଗଡ଼ ପାହିଗଲା," ଏ କଥାସବୁ ମନ୍ତ୍ରୀ

ପୁଅ ଶୁଣିଥାଏ, ସମସ୍ତେ ଉଠି ବାହାରିଲେ । ଯାଉ ଯାଉ ବାଟରେ ଗୋଟିଏ ବେଉଡ଼ଳ ପଡ଼ିଲା, ରଜାପୁଅକୁ ସେ ବାଟେ ନ ନେଇ ଆଉ ଗୋଟାଏ ବାଟରେ ମନ୍ତ୍ରିପୁଅ ନେଇଗଲା । ସେଠଉଁ ଯାଇ ଗାଁପାଖରେ ପହଞ୍ଚିଲେ । ରାଜା, ପୁଅ ଆସୁଛି ବୋଲି ଶୁଣି ଗୋଟାଏ ଘୋଡ଼ା ପଠାଇ ଦେଲେ । ରଜାପୁଅ ସେ ଘୋଡ଼ାରେ ନ ଚଢ଼ୁଣୁ ମନ୍ତ୍ରିପୁଅ ତା ଗୁରୁଣ୍ଡାପୁରୁ କରି ହାଣିଦେଲା । ଏଥିରେ ରଜାପୁଅ ମନେ ମନେ ଭାରି ରଡ଼ୁଥାଏ, କିନ୍ତୁ କହିପାରୁ ନ ଥାଏ । ଏମନ୍ତ ସେ ପକ୍କାଘର-ପାଖକୁ ଆସିଲେ । ରଜାପୁଅ ତା ଭିତରକୁ ଯାଉଚି; ମନ୍ତ୍ରିପୁଅ ସେ ଘରୁ ଦଶହାତ ହାଣିପକାଇଲା । ରଜାପୁଅ ଆନ୍ତୁର ରାଗୁଥାଏ । ଚତୁର୍ଥୀ ଦିନ ରାତିରେ ରଜାପୁଅ ଆଉ ଉଜ୍ଜ୍ୱଳବତୀ ଶୋଇଥିଲେ, ମନ୍ତ୍ରିପୁଅ ଖଟତଳେ ଲୁଚିଥାଏ, ତେଣୁ ନାଗନାଗୁଣୀ ଆସିଲେ, ମନ୍ତ୍ରିପୁଅ ଖଣ୍ଡା ଧରିଥିଲା ତାଙ୍କୁ ହାଣି ପକାଇଲା । ଯେ ଘରୁ ବାହାରି ଆସୁଚି, ଦେଖିଲା ଯେ ଉଜ୍ଜ୍ୱଳବତୀ ଦେହରେ ଟୋପାଏ ରକ୍ତ ଛିଟିକି ପଡ଼ିଚି । ଧଡ଼ପଡ଼ ହୋଇ ପୋଛିଦେଲାବେଳକୁ ଉଜ୍ଜ୍ୱଳବତୀର ନିଦ ଭାଙ୍ଗିଗଲା । ରଜାପୁଅ ଉଠିଲା,ଭାରି ରାଗିକରି କହିଲା, ତେମେ କାହିଁକି ଏ ଘରେ ପଶିଥିଲ କହ । ମନ୍ତ୍ରିପୁଅ କହୁଁଥାଏ ସଙ୍ଗାତ,ମତେ ସେ କଥା ପଚାରନା, କହିଲେ ପଥର ହୋଇଯିବି । ରଜାପୁଅ କେତେ ମାନିଲା ନାହିଁ, ଭାରି ଜିଗିର ଲଗାଇଲା । ମନ୍ତ୍ରିପୁଅ ଆଉ କଣ କରିବ, ସବୁ କହିଗଲା, ସେଇଠି ପଥର ହୋଇପଡ଼ିଲା । କେମନ୍ତ ସଙ୍ଗାତକୁ ମୁଁ ପଥରକଲି ! ଏହା ଭାବି ରଜାପୁଅ ପାଗଳ ହୋଇଗଲା । ପାଗଳ ହୋଇ କୁଆଡ଼େ ବାହାରିଗଲା । ତହିଁର କେତେଦିନେ ରଜାପୁଅର ଗୋଟିଏ ପୁଅ ହେଲା । ରଜାପୁଅ ଏଆଡ଼େ ସେଆଡ଼େ ବୁଲି ବୁଲି ସେହିସମୟକୁ ଯାଇ ଦିନେ ରାତିରେ ସେହି ପଥରଚକଡ଼ା ଉପରେ ଶୋଇ ପଡ଼ିଥିଲା । ରାତି ଅଧ ହେଲାଣି,ଯୋଡ଼ିଏ ସ୍ତ୍ରୀପୁରୁଷ ବାହାରିଲେ, କହିଲେ,ଅହା ! ସେ ମନ୍ତ୍ରିପୁଅଟି ପଥର ହୋଇଯିବାରୁ ଏ ବାୟା ହୋଇ ଏମନ୍ତ ବୁଲୁଚି,

ଏହାର ଯେମନ୍ତ ହେଜ ନୁଥନ୍ତା; ଏହାର ଗୋଟିଏ ପୁଅ ହୋଇଛି, ସେ ପୁଅକୁ ନିଅନ୍ତା, ସେ ପଥର ଉପରେ ହାଣି ଦିଅନ୍ତା ଯେ ମନ୍ତ୍ରି-ପୁଅ ଜୀଇ ଉଠନ୍ତା । ରଜାପୁଅର ସବୁକଥା ଠିକ୍ ହେଲା; ଘରକୁ ଫେରିଯାଇ ସେ ପୁଅଟୋଖକୁ ଗଲା । ତାକୁ ନେଇ ସେ ପଥର ଉପରେ କଣ୍ଡଦେବାରୁ ମନ୍ତ୍ରି ପୁଅ ଜୀଇଉଠିଲା । ମନ୍ତ୍ରିପୁଅ କହିଲା, ସଙ୍ଗାତ ! କି କଲ ? , ମୋ ଲରପାଇଁ ପୁଅକୁ ମାରିଲ ? ଯୁଆଡେଇଁ ତ ମୋହମଣି ଅଛି, ତହିଁରୁ ଟିକିଏ ଘୋରିକରି ପୁଅକୁ ପିଆଇ ଦେଲା, ପୁଅ ଜୀଇ ଉଠିଲା । ରଜାପୁଅର ମନ୍ତ୍ରିପୁଅର ଆଗେ ଯେମନ୍ତ ଥିଲା ସେହି ପରି ମନ ମିଳିଲା, ରଜାପୁଅ ଉଜ୍ଜ୍ୱଳବତୀକି ନେଇ ସୁଖରେ ଘରଦ୍ୱାର କଲା, ମୁଁ ଗଲରୁ କଥା ନ କହିଲି । ମୋ କଥାଟି ସରିଲା, ଇତ୍ୟାଦି ।

## ମୃଉନାବତୀ କଥା ।

ଗୋଟିଏ ରଜାଟିଏ, ତାର ଗୋଟିଏ ପୁଅ । ପୁଅକୁ କନ୍ୟାଘର ଲଟିଲେ । ପୁଅ କହିଲା ମୁଁ କନ୍ୟାକୁ ଦଶ ବାଧା ମାରିବି ସେ ଯେବେ ସହିବ ମୁଁ ତେବେ ତାକୁ ବିଭା ହେବି । ଯୋଉଁ ରଜା ଏ କଥା ଶୁଣିଲେ, ସେ କହିଲା ମୁଁ କାହିଁକି ବିଭା କରିବି, ମୋର କଣ ଝିଅକୁ ବର ମିଳୁନାହିଁ ? ଏହିପରି ସମସ୍ତେ ନାହିଁ କଲେ । ସେଅଡ଼ ଦେଶର ରଜାଘରକୁ ଭଲଲୋକ ଗଲା । ରଜା ନାହିଁ ନାହିଁ ହେଉଥାଏ, ଝିଅ କେମନ୍ତ ଶୁଣିପାରି କହିଲା, ହଉ ମୁଁ ବିଭା ହେବି, ବାପା କାହିଁକି ନାହିଁ କରୁଛନ୍ତି । ଝିଅ ଯୋଉଁଠୁ ରାଜି ହେଲା ରଜା କହିଲେ ହଉ ବିଭାଘର କର, ଝିଅ ତ ମଙ୍ଗୁଛି ଆମ୍ଭର କଣ ଅଛି ? ବିଭାଘର ସରିଲା,

ବରକନ୍ୟା ଘରକୁ ଆସିଲେ, ଚତୁର୍ଥୀଦିନ ଗଡ଼ରେ ରାଜପୁତ୍ର ସେ ରାଜାଝିଅକୁ କହିଲେ, ମୁଁ ପରା ତମକୁ ଦଶବାଧା ମାରିବି ଆସ । ରାଜାଝିଅ କହିଲା ହଁ ମାରିବ ଯେ, ମୁଁ ଯେଉଁ କଥାଟି କହୁଛି ତା ଯେବେ କହିପାରିବ ତେବେ ମାରିବ । ଏ ପଚାରିଲା କଥାଟି କଣ ? ରାଜାଝିଅ କହିଲା, ସେ ଦେଶର ରାଜାଝିଅ ମଞ୍ଜୁନାବତୀ ଅଛି, ତାକୁ ଯେ କଥା କୁହାଇବ ସେ ତାକୁ ବିଭା ହେବ, ତମେ ଯେବେ ତାକୁ କଥା କୁହାଇ ପାରିବ, ତେବେ ମତେ ଦଶବାଧା ମାରିବ । କିଛିଦିନ ଗଲା, ରାଜପୁଅ ମଞ୍ଜୁନାବତୀ ଦେଶକୁ ବାହାରିଲା, କେତେକ ଦିନପରେ ମଞ୍ଜୁନାବତୀ ନଗରରେ ପହଞ୍ଚିଲା । ସେଠାରେ ଦୁଇ ଏକ ଦିନ ରହି ମଞ୍ଜୁନାବତୀପୁରକୁ ଗଲା, କହିଲା ଧାଇ, ତମ ଝିଅ କଣ ଆମକୁ କଥା କହିବେ ନାହିଁ ? ଧାଈ କହିଲା, ଏପରି କେତେ୨ ରଜା ଆସି ବନ୍ଧଘରେ ପଡ଼ିଛନ୍ତି, ବିଭା ହୋଇ ପାରି ନାହାନ୍ତି, ସେମାନେ ତ ପଦେ କଥା କେହି ନେଇପାରିଲେ ନାହିଁ, ଆଉ ତମେ ଗୋଟାଏ ନେବ; ହଉ ଦେଖ । ଗଡ଼ ପାଇଗଲା, ଏ ରାଜପୁଅ ଅଉ କଥା ନେଇପାରିଲା ନାହିଁ, ତାକୁ ନେଇ ବନ୍ଧଘରେ ରଖିଲେ । ଏଣେ ଏ ରାଜାଝିଅ ( ତାର ଭାରିଯା ) କଣ କଲା—କିଛି ଦିନ ଗିହିଁଲା(୧), ଯୋଉଠୁ ରାଜପୁଅ ନ ଆସିଲା, ଗୋଟାଏ ମରଦ ବେଶ ଧରିଲା, ଘୋଡ଼ାରେ ଚଢ଼ି ମଞ୍ଜୁନାବତୀଦେଶକୁ ବାହାରିଲା । ଯାଉଚି, ବାଟରେ ଅସୁର ଗୋଟା ପଶା ଖେଳୁଛନ୍ତି ଯେ କେହି ଜିତି ପାରୁନାହାନ୍ତି କି ହାରୁନାହାନ୍ତି । ଏଙ୍କୁ ଦେଖି ସେମାନେ କହିଲେ, ହେ ! ଆମକୁ ଟିକିଏ ଜିତାଇ ଦିଅ, ଆମେ ତମକୁ ଖାଇବୁ ନାହିଁ । ଏ ସେଠାରେ ବସିଲା, ବାଜିଏ ଏଙ୍କୁ ଜିତାଇଦେଲା, ବାଜିଏ ତାଙ୍କୁ ଜିତାଇଦେଲା, ଏହାପରେ ସମସ୍ତଙ୍କୁ ଖପି କରିଦେଲା, ସେଉଠୁ ବାହାରିଲା, କହିଲା ମୋର ଗୋଟାଏ କାମ ଅଛି, ମୁଁ ଯାଉଚି ।

---

( ୧ ) ଅପେକ୍ଷା କଲା ।

ଏମାନେ କହିଲେ, ଆମକୁ ସାଙ୍ଗରେ ନିଅ, ଆମେ ତମର କିଛିତ ଉପକାର କରିବୁଁ, କହିଲେ, ରଜାଝିଅ ସାଙ୍ଗେ ଗଲେ । ପାଞ୍ଚ ଜଣଯାକ ମଞ୍ଜନାବତୀ ନଗରରେ ପହଞ୍ଚିଲେ । ରଜା ଶୁଣିଲେ, ଏମାନଙ୍କୁ ସବୁ ସିଧା ସରଞ୍ଜାମ ଦେଲେ । ଅସୁର ଚାରିଜଣଙ୍କୁ ଯେତେ ଆଣି ଦେଉଥାନ୍ତି, ସେ କେବେ ମନା କରୁ ନ ଥାନ୍ତି, ଯେତେକ ମାହାଲରେ ପଡ଼ିବାପାତ୍ର ଥିଲା ସବୁ ଆଣି ଦେଲେ, ତାକୁ ସୁଦ୍ଧା କଷାରେ ଖାଇଦେଲେ, ଦଶଭରଣ ଚାଉଳର ଭାତ ଖାଇଲେ, ନଇକପାଣି ପିଇ ଗଲେ । ଏହିପରି ଥାନ୍ତି, ଯାଉଁ ସନ୍ଧ୍ୟାବେଳ ହେଲା, ରଜାଝିଅ ସେମାନଙ୍କୁ କହିଲା, ତମେ ଜଣେ ମଞ୍ଜନାବତୀର ଖଟ ଖୁରାରେ ରହିବ, ଜଣେ ଦୀପରୁଖାରେ, ଜଣେ ଚାଳରେ, ଜଣେ ତା ବେକର ହାରରେ ରହିବ, ମୁଁ ଯେତେବେଳେ ଯାହାକୁ ଯାହା ପଚାରିବ ସେ ତାର ଗୋଟିଏ ଅସମ୍ଭବ ଉତ୍ତର ଦେବ । ରାତି ହେଲାରୁ ରଜାଝିଅ ମଞ୍ଜନାବତୀ ପୁରକୁ ଗଲା, ଧାଇକୁ ପଚାରିଲା ତମ ଝିଅ କଥା କହିବେ ନାହିଁ ? ଧାଇ ସମସ୍ତଙ୍କୁ ଯେପରି କହେ, ସେହିପରି କହିଲା । ଏ କହିଲା, ହଉ ନ କହନ୍ତୁ, ମୁଁ ଗୋଟିଏ କଥା କହୁଚି, ଶୁଣନ୍ତୁ । ଅସୁରମାନେ ଅଦୃଶ୍ୟ ହୋଇ ରଜାଝିଅ ଯେମନ୍ତ କହିଥିଲା ସେହିପରି ସେ ଘରଭିତରେ ଥାନ୍ତି । ରାତି ପ୍ରଥମପ୍ରହର, ରଜାଝିଅ ଗୋଟିଏ କଥା କହିଲା—

## ॥ ବେଶ୍ୟା ଓ ଶୁକପକ୍ଷୀ କଥା ॥

ଗୋଟିଏ ବେଶ୍ୟାଟିଏ ଯେ ସେ ଗୋଟିଏ ଶୁଆ ପୋଷିଥିଲା । ଦିନ-କର ଶୁଆମେଳ (୧) ହେଲା । ଏ ଶୁଆ ବେଶ୍ୟାକୁ କହିଲା ଆମର

(୧) ଶୁଆମାନଙ୍କର ମେଳ

ମେଳ ହେଉଛି, ମା ! ମୁଁ ଟିକିଏ ସେଠାକୁ ଯିବି ? ଏ କହିଲା ହଉ ଯା, ଶୁଆ ଗଲା ମେଳରେ ମିଶିଲା । ମେଳ ଭାଙ୍ଗିବାରୁ ସବୁ ଶୁଆ ଯାକ ଗଲେ ବାହାରି । ଏ ଶୁଆ ମନେ ବିଚାରିଲା, ଖାଲି ହାତରେ କଣ ଯିବି, ବେଶ୍ୟାପାଇଁ କିଛି ନ ନେଇଗଲେ ସେ କଣ କହିବ ? ଆଉ ଶୁଆମାନେ କହିଲେ, ତାକୁ କଣ ଅପୂରୁବ ଯେ କଣ ନେବୁ ? ନେଲେ ଏହି ବୃଦ୍ଧିକିସୁମର (୨) ଫଳରୁ ଗୋଟିଏ ନେ । ଏ ସେହି ଫଳରୁ ଗୋଟିଏ ଆଣି ବେଶ୍ୟାପାଖରେ ପକାଇଦେଲା । ବେଶ୍ୟା ସେ ଫଳକୁ ବାରଆଡ଼କୁ ଫିଙ୍ଗି ଦେଇଥିଲା ଯେ ତହିଁରୁ ଗୋଟିଏ ଗଛ ଉଠି ଏଡ଼େବଡ଼ ଗଛ ହୋଇ ଗଇଜର (୩) ଫଳ ଫଳି ପାଚିଥାଏ ଗୋଟିଏ ଖୁବ୍ ସୁପାକଲିଟିଏ, ତାକୁ ସାପ ସୁଙ୍ଘିଦେଇ ଯାଇଥାଏ । ବେଶ୍ୟା ସେହିଟିକି ଆଣିଲା, ଦାନ୍ତ ଦରଦେଇ ଫାଳେ କାଉ ଆଡ଼କୁ ପକାଇଦେଲା, କହିଲା ଦେଖେଁ କି ଫଳ ଆଣିଛି । କାଉ ସେ ଫଳକୁ ଯେମନ୍ତ ଖାଇଲା, ସେମନ୍ତ ମରିଗଲା । ବେଶ୍ୟା କହିଲା ହଁ ମତେ ମାରିବାକୁ ବିଚାର କରିଥିଲୁ । ଏହା କହି କାଠେ ପକାଇଲା ଯେ ଶୁଆଟି ମରିଗଲା । ତହିଁର କେତେଦିନେ ଧୋବଣୀଟିଏ ଯେ ତାର ସ୍ୱାମୀ ତାକୁ ମାରୁଥାଏ, ସେ ବେଶ୍ୟାବାଡ଼ର ସେହି ଫଳରୁ ଗୋଟାଏ ଖାଇ ମରିବାକୁ ବିଚାର କରିଥାଏ । ବେଶ୍ୟାଘରକୁ ଲୁଗା ଘେନିକରି ଆସିଲାବେଳେ ସେ ଫଳରୁ ଗୋଟାଏ ଖାଇଦେଲା, ଖାଇଦେଲାକ୍ଷଣି ତାର ଯୁବାବୟସ ହୋଇଗଲା । ବେଶ୍ୟାକୁ ଡାକିଲା, ଲୁଗା ନଥ, ବେଶ୍ୟା ଆଉ ଚିହ୍ନିପାରିଲା ନାହିଁ, କହିଲା ତୋ ଶାଶୁକୁ କି ପଠାଇଲୁ ଅଇଲୁ କହିଁକି ? ଏ କହିଲା ନାହିଁ ସାଆନ୍ତାଣି । ମୋ ବୋହୂ ଆସିନାହିଁ ମୁଁ ଆସିଛି, ମୁଁ ତମର ବାଡ଼ର ବିଷଫଳ

---

(୨) ଯେ ଫଳ ଖାଇଲେ ବୃଦ୍ଧାବସ୍ଥା ଲୋପ ହୋଇ ଯୁବା ହେବାକୁ ହୁଏ

(୩) ଅପର୍ଯ୍ୟାପ୍ତ ।

ଖାଉଥିଲି ମରବ ବୋଲି, ଏମନ୍ତ ହୋଇଗଲି । ବେଶ୍ୟା କହିଲା ଆହା ! ମୁଁ କଣ କଲି, ଶୁଆଟିକୁ ମୋର ମିଛରେ ମାରି ପକାଇଲି ! ସେତ ମୋ ପାଇଁ ବୁଢ଼ୀକଯୁବର ଫଳ ଆଣିଥିଲା ! ଏହିପରି କେତେ ସନ୍ତାପି ହେଲା, ଆଉ କଣ କରିବ, ସ୍ଥିର ହୋଇ ରହିଲା । ଏ କଥାଟି କହିସାରି ରଜାପୁଅ କହିଲା, କହିଲୁ ହେ ଖଟଖୁରା, ଏଥିରେ କାହାର ଦୋଷ ? ଖଟଖୁରା କହିଲା ଏଥିରେ ଶୁଆର ଦୋଷ । ମଜନାବନ୍ଧାଥିଲା କହିଲା, ମୋ ଖଟଖୁରା ହୋଇ ତୁ ଏମନ୍ତ କଥା କହୁଚୁ ? ଏଥିରେ ବେଶ୍ୟାର ଦୋଷ । ରଜାପୁଅ ସେଉଠୁ କହିଲା, ଶୁଣିଥାଅ ହୋଧାଉ, ତମ୍ଭେ ପ୍ରଥମପ୍ରହରର କଥା କହିଲେ । ଏହିପରି ଦ୍ୱିତୀୟପ୍ରହରେ ରଜାପୁଅ ଆଉ ଗୋଟିଏ କଥା କହିଲା ।—

## ମହାଜନ ଓ କୁକୁରର କଥା ।

ଗୋଟିଏ ମହାଜନଟିଏ ସେ ସେ ରଜାପୁଅ ସଙ୍ଗେ ସଙ୍ଗାତ । ସେ ଗୋଟିଏ କୁକୁର ପୋଷିଥିଲା । ରଜାଙ୍କ ନଅରରେ ଭାରି ଚୋର ଗୋଳମାଳ ଲାଗିଲା । ରଜାପୁଅ କହିଲା ହେ ସଙ୍ଗାତ ! ତମ କୁକୁରକୁ ଟିକିଏ ଅଳ୍ପଦିନ ସକାଶେ ଦିଅନ୍ତ କି, ନଅରରେ ଚୋର ଗୋଳମାଳ ଲାଗିଚି, ମେହେର ଦିଅନ୍ତା, ଚୋର ଗୋଳମାଳ ଗଲେ ତମ କୁକୁରକୁ ପଠାଇଦେଅନ୍ତି । ମହାଜନ ରଜାପୁଅ ସାଙ୍ଗେ କୁକୁରକୁ ପଠାଇଦେଲା, କୁକୁର ଦ ଚାରିଦିନ ରହି ରଜାଙ୍କ ନଅରରୁ ଚୋରଙ୍କୁ ଘଉଡ଼ାଇ ଦେଲା, ଆଉ ଜମା ପୂରିଇଦେଲା ନାହିଁ । ଚୋର ଗୋଳମାଳ ଭାଙ୍ଗିଲାରୁ ରଜାପୁଅ କୁକୁରବେକରେ ଖଣ୍ଡେ ଚିଠି ଲଟକାଇଦେଲା । ଗୋଟିଏ ଟଙ୍କା ବାନ୍ଧିଦେଲା, କହିଲା ଯା, ତୋ ସାନ୍ତ ପାଖକୁ, ଏହା କହି ଆଠଦିନ ପରେ ନାହିଁ ପଠାଇଦେଲା । ମହାଜନ ଯାଇକୁ ଦେଖି ମନେ କଲା ଏ ବାହାରି ଆସିଲା, କହିଲା ନିମକହାରାମ କୁକୁର ତୁ ପଳାଇଥିଲୁ, ଏହା କହି ଠେଙ୍ଗାଏ ଦେଲା ଯେ କୁକୁରଟି ମରିଗଲା ।

ପରେ ଦେଖେ ଯେ ସ୍ତ୍ରୀ ବେକରେ ଖଣ୍ଡେ ଛଠି ଲଟକଚ, ପଡ଼ିଲା-ବେଲକୁ ରଜାପୁଅ ଲେମ୍ବିଚ ଯେ କୁକ୍କୁର କାର୍ଯ୍ୟସାଧନ କରି ଗଲା । ମହାଜନ ବଡ଼ ଧଥେଇଦେଲା ( ୧ ) ଆଉ କଣ କରିବ, ଅନୁପଚ କରିଚ, ଭୂନ ହୋଇ ରହିଲା । ଏହା କହିସାରି ରଜାଝିଅ ପଗ୍ଗରିଲା ଗ୍ଣଳ, କହିଲୁ ଏଥିରେ କାହାର ଦୋଷ ? ଗ୍ଣଳ କହିଲା କୁକ୍କୁରର ଦୋଷ । ଏହା ଶୁଣି ମଞ୍ଜୁନାବତୀ କହିଲା ହିଁ କୁକ୍କୁରର କପରି ଦୋଷ ହେଲା ? ମହାଜନର ଦୋଷ ହେଲା ନା । ଏ କହିଲା ଶୁଣିଥାଅ ଦୋ ଧାଇ, ଚମ ଝିଅ ଆମକୁ ଦ୍ୱିତୀୟ ପହର କଥା କହିଲେ । ତୃତୀୟ ପହର ରଜାଝିଅ କହିଲା—

## ଈଶ୍ୱରୀବାହ୍ମଣୀ ଓ ନେଉଳର କଥା ।

ଗୋଟିଏ ଈଶ୍ୱରୀବାହ୍ମଣୀ ନେଉଳଟିଏ ପୋଷିଥାଏ । ସେ ଦୁଃଖ ଧନ୍ଦାରେ ଗଲାବେଳେ ନେଉଳକୁ ପୁଅକୁ ଜଗାଇ ଦେଇ ଯାଏ । ଦିନେ ସେ କାହାଘରେ ଧାନ କୁଟିବାକୁ ଗଲା, ନେଉଳକୁ କହି ଗଲା ମୋ ପୁଅ ଏଠାରେ ଶୋଇଚ, ତାକୁ ଜଗିଥିବୁ । ନେଉଳ ଜଗିଥିଲା, ଟିକିଏ ଶୋଇପଡ଼ିଲା । ଏହି ସମୟରେ ସାପ ଆସି ପୁଅକୁ ଦଂଶିଦେଲା । ନେଉଳର ନିଦ ଭାଙ୍ଗିଗଲା, ଅନାଇଁ ଦିଏ ଯେ ସାପ ଚାଲିଯାଉଚ, ପୁଅ ମରି ପଡ଼ିଚ । ନେଉଳ ଧଡ଼ପଡ଼ ହୋଇ ଉଠି ଆଣ ସାପକୁ ମାରି ପକାଇଲା, ନେଇକୁଅଡ଼େ ଫୋପାଡ଼ି ଦେଲା, ବଣକୁ ଯାଇ ଅମର ଗଦ ଔଷଧ ଆଣୁଚି ପୁଅକୁ ଖୁଆଇ ବଞ୍ଚାଇବ ବୋଲି ଈଶ୍ୱରୀବାହ୍ମଣୀ ଆସି ପହଞ୍ଚିଲା, ଦେଖିଲା ଯେ ପୁଅ ମରିଚ, ନେଉଳ ରକ୍ତ ସର ସର ( ୨ ) ହୋଇଚ, ମନେ କଲା

---

( ୧ ) ସନ୍ତାପିତହେଲା, ବ୍ୟସ୍ତ ହେଲା । ୨ । ଭକ୍ତାକ୍ତ ।

ଏହି ମୋ ପୁଅକୁ ମାରିଦେଲା, ପ ଦାରେ ପକାଇଲା ସେ ନେଉ-ଳଟି ମରିଗଲା, ତା ପାଖରୁ ଖଣ୍ଡେ ଚେର ଖସିପଡ଼ିଲା ବ୍ରାହ୍ମଣୀ ସେ ଚେର ଖଣ୍ଡି ନେଇ ଯୋର ପୁଅକୁ ପିଆଇଦେଲା ସେ ପୁଅ ବଞ୍ଚି-ଉଠିଲା । ବ୍ରାହ୍ମଣୀ କହିଲା ଆହା ! ମୁଁ ନେଉଳକୁ କାହିଁକି ମାରିଲି, ସେ ତ ମୋ ପୁଅପାଇଁ ଔଷଧ ଆଣିଥିଲା । ଏହା କହିଲା,ବଡ଼ ବ୍ୟସ୍ତ ହେଲି, ରହିଲି । ଏହା କହି ରଜାପୁଅ କହିଲା, କହିଲୁ ହେ ଦୀପରୁଖା, ଏଥିର କାହାର ଦୋଷ ହେଲା ? ଦୀପରୁଖା କହିଲା ନେଉ-ଳର ଦୋଷ । ଏଥିରେ ମନ୍ତ୍ରୀ ବଡ଼ ରାଗିଯାଇ କହିଲା କଣ, ନେଉ-ଳର ଦୋଷ ହେଲା ? ମୋ ଦୀପରୁଖା ହୋଇ ଏମନ୍ତ କହୁଚୁ ! ଏଥିରେ ବ୍ରାହ୍ମଣୀ ଦୋଷୀ । ଏ ସେଉଠୁ କହିଲା ଦେଖୁଥାଅ ହୋ ଯାଇ, ତମପୁଅ ଆମକୁ ତୃତୀୟପହରର କଥା କହିଲା । ଏହି ପର ଚତୁର୍ଥପହର ରଜାପୁଅ ଥଉ ଗୋଟିଏ କଥା କହିଲା । ସେ କଥାଟି ଏହି—

## ଚାରିର ସଙ୍ଗାତ କଥା ।

ଗୋଟିଏ ଦେଶରେ ରଜାପୁଅ, ସୁନାରିବଣିଆପୁଅ, ବଢ଼େଇପୁଅ, ତନ୍ତ୍ରପୁଅ ଏ ଚାରି ସଙ୍ଗାତ । ଏ ଚାରିହେଁ ବିଦେଶ କରି ବାହାରିଲେ ଯାଉ ଯାଉ ଗୋଟିଏ ବନସ୍ତରେ ରାତି ହେଲା, ସେଇଠି ରହିଲେ, ପହରକୁ ପହର ଜଣେ ଲେଖାଁ ଜଗି ବସିଲେ, ଆଉ ସମସ୍ତେ ଶୋଇଲେ । ପ୍ରଥମ ପହର ବଢ଼େଇର ପାଳି ପଡ଼ିଲା, ସେ ଜଗିଥାଏ, ଖଣ୍ଡିଏ କାଠରେ ଗୋଟିଏ କନ୍ୟାଟିଏ ଗଢ଼ିଲା, ଦ୍ୱିତୀୟ ପହରସୁନାରି-ବଣିଅର ପାଳି, ସେ ସେ କନ୍ୟାଟିକି ଗୁଡ଼ିଏ ଅଳଙ୍କାର ଖଞ୍ଜାଇ-ଦେଲା । ତୃତୀୟ ପହର ତନ୍ତ୍ରପୁଅ ଜଗିଲା, ସେ କନ୍ୟାଟିକି ଲୁଗାପିନ୍ଧା-ଇଲା । ଚତୁର୍ଥପହର ରଜାପୁଅର ପାଳି ପଡ଼ିଲା, ସେ କନ୍ୟାଟିକୁ ଜୀବଦାନ ଦେଲା । ଏହିପର ସମସ୍ତେ ଉଠିଲେ, ରାତି ପାହିଲା, କନ୍ୟା-

ଟିକୁ ଦେଖି ସମସ୍ତେ ଲୋଭ କଲାଇଲେ । ଏହା ଶୁଣି ରଜାଝିଅ କହିଲା, କହିଲୁ ହେ ହାର ସେ କନ୍ୟାକୁ କିଏ ନେବ ? ମଞ୍ଜୁନାବତୀ ବେକର ହାର କହିଲା ନେଲେ ନେବ ରଜାପୁଅ, ନଇଲେ ବଢ଼େଇ-ପୁଅ । ମଞ୍ଜୁନାବତୀ କହିଲା ହଁ । ତୁ ମୋର ହୋଇ ଏଡ଼େ ଅନ୍ୟାୟ କଥା କହୁଚୁ ! ବଢ଼େଇପୁଅ, ରଜାପୁଅ କେମନ୍ତ ନେବେ ? ବଢ଼େ-ଇତ ଜନ୍ମଦାତା, ରଜାପୁଅତ ଜୀବନଦାତା, ଏ ଦୁହେଁ କିପରି ନେବେ ? ନେଲେ ନେବ ବଣିଆପୁଅ, ନଇଲେ ଛତ୍ରପୁଅ । ଏ କହିଲା ଶୁଣିଥାଅ ହୋ ଧାଈ ତମ ଝିଅ ଆମକୁ ଗୂଢ଼ ପଦର ପାକ କଥା କହିଲେ । ସତ ପାହିଲା, ଏ ଗୂଢ଼ ଅପୂର୍ବ ତାଙ୍କ ସୂତ୍ରରେ (୧) ଚାଲିଗଲେ । ଏ ରଜା-ଝିଅ ରଜାଙ୍କ ପାଖକୁ ଗଲା, କହିଲା ତମ ଝିଅ ଆମକୁ କଥା କହୁଚନ୍ତି । ଧାଈଙ୍କ ଉକସ ହେଲା, ଧାଈ କହିଲା ହଁ କଥା କହୁଚନ୍ତି । ରଜା-କହିଲେ ଆଉ ବିଳମ୍ବ କାହିଁକି, ବିଭାଘର ହେଉ । ରଜାଝିଅ କହିଲା ହଉ ବିଭାଘର ହେବ ଯେ ଆଗେ ଆପଣଙ୍କ ବନ୍ଦଶାଳାରେ ଯେତେକ ବନ୍ଦୀ ହୋଇଚନ୍ତି ତାଙ୍କୁ ମୁକୁଳାଇ ଦିଅନ୍ତୁ । ରଜା ଆଜ୍ଞା ଦେଲେ ମୁକୁଳାଇବାକୁ, ସମସ୍ତେ ମୁକୁଳି ଗଲେ । ଏ ରଜାଝିଅର ଯେ ବର, ତାକୁ ଏ ସୂତ୍ରରେ ଡାକି କହିଲା ହେ ମୁଁ ମଞ୍ଜୁନାବତୀକି କଥା କୁହା-ଇଚି, ରଜା ମତେ ତାକୁ ବାହା କରିଦେବାକୁ ବସିଚନ୍ତି, ମୁଁ ତାକୁ ବିଭା ହେବି ନାହିଁ, ତେମେ ତାକୁ ବିଭା ହୁଅ, ମୁଁ ତମ ସାଙ୍ଗେ ଭଣ୍ଡାରି ହୋଇଯିବି । ସେହିପରି ସବୁ ହେଲା, ରଜାପୁଅ ମଞ୍ଜୁନାବତୀକି ବିଭା ହେଲା, ବହୁତ ଦାନ ଯୌତୁକ ଦିଆଗଲା, ଘରକୁ ଆସିଲା । ତା ଆଗ ଛୁରିଯା ଭଣ୍ଡାରି ବେଶ ହୋଇ ତା ସାଙ୍ଗେ ସାଙ୍ଗେ ଥାଏ । ଦିନେ ବାଟରେ ଏ ହଠାତ୍ ଭଣ୍ଡାରି ବେଷ ଗୁଡ଼ି ନିଜରୂପ ଧରି ରଜାପୁଅ ପାଖରେ ପହଞ୍ଚିଲା, ରଜାପୁଅ ଦେଖି କାବା ହୋଇଗଲା, କହିଲା

---

(୧) ଢ଼ଙ୍ଗ ପନ୍ଥରେ, କୌଶଳରେ ।

ତେମେ କିପରି ଏଠାକୁ ଆସିଲ ? ଏ କହିଲା ତମ ବାନ୍ଧାଘର ଦେଖି-ବାକୁ ଆସିଥିଲି । ରଜାପୁଅତ ଏ ସବୁ କିଛି ଜାଣେ ନା, କହିଲା ଏବେ ତ ମଉନାବଣୀକ ବିଭା ହୋଇ ଆସିଲ, ତମକୁ ଦଣ୍ଡବଧା ମାରିବାର ମୋର ଥାଇଲା । ଏ କହିଲା ଚଣ୍ଡକଣା ଖାଇ ରହି ନାହିଁ ଯେ ଫେର୍ କହୁଚ ? ତେମେତ ମୋ ଉପାସେ ବନ୍ଧଣରୁ ମୁକୁଳିଲ, ନଇଲେ ସେଇଠି ଥାନ୍ତ, ତେମେ କଣ ମଉନାବଣୀଠାରୁ କଥା ନେଇଚ ? ରଜାଝିଅ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ସବୁ କହିଗଲା, ରଜା-ପୁଅ ଶୁଣି ବଡ଼ ଖୁସି ହେଲା । ଅସୁର ଗୃହିଙ୍କି ବିଦା କରି ଦେଲେ, ରଜାପୁଅ ଦି ଭାରିଯାଙ୍କୁ ନେଇ ସୁଖରେ ରହିଲା, ମୁଁ ଗଲାକୁ କଥା ନ କହିଲି । ମୋ କଥାଟି ସରିଲା ଇତ୍ୟାଦି ।

## ସୁନାଫୁଲ କଥା ।

ଗୋଟିଏ ମନ୍ତ୍ରୀଟିଏ, ତାର ସାତ ପୁଅ ସାତ ବୋହୂ, ସୁନାଫୁଲ ବୋଲି ଗୋଟିଏ ଝିଅ । ସେ ଝିଅ ସୁନାଫୁଲ ଫୁଟେ । ଭାଉଜମାନଙ୍କୁ ଦିନକର ସୁନାଫୁଲ କହିଲା, ହେ, ମୁଁ ସୁନାଫୁଲ ଫୁଟିବି, ତେମେମାନେ ଜଣ କରିବ; ଘର ବଖୁରାଏ ଲିପିଆଣିବ, ଗାଡ଼ୁଟିଏ ନେଆଣିବ, ମୁଁ ସେଥିରେ ବସିବି, ମୋ ଉପରେ ମାନ୍ଦ ଭଡ଼ାଇ ଦେବ, ହଳଦୀ ପାଣି ମୁଠିଏ ଛିଞ୍ଚି ଦେବ, କହିବ ଫୁଟ ଗୋ ସୁନାଫୁଲ ଫୁଟ । ଫୁଟି ସାରିଲାରୁ ସେହିପରି ହଳଦୀପାଣି ମୁଠିଏ ଛିଞ୍ଚି ଦେବ, କହିବ ଉଠ ଗୋ ସୁନାଫୁଲ ଉଠ । ଭାଉଜମାନେ ସେହିପରି କଲେ । ସୁନାଫୁଲ ଦିବ୍ୟସୁନ୍ଦର

ଫୁଲଗଛଟିଏ ହେଲା, ସେ ଘରଯାକ ଫୁଲ କଢ଼ି ହୋଇ ପୂରିଲା । ସାତ ଭଉଣୀଯାକ ଗଲେ, ଡାଳପତ୍ର କିଛି ଭାଙ୍ଗିଲେ ନାହିଁ, ସାତ-ଯାକ ପାଇଁ ସାତଟି, ସୁନାଫୁଲ ପାଇଁ ଗୋଟିଏ, ଆଠଟି ଫୁଲ ତୋଳିଲେ, ହଳଦୀ ପାଣି ମୁଠାଏ ଛିଞ୍ଚି ଦେଲେ, କହିଲେ ଉଠ ଗୋ ସୁନାଫୁଲ ଉଠ । ସୁନାଫୁଲ ଉଠି ବସିଲା । ସେ ସୁନା-ଫୁଲରୁ ସାତ ଯା ସାତଟି ଲଗାଇଲେ, ସୁନାଫୁଲକୁ ଗୋଟିଏ ଦେଲେ, ରହିଲେ । ଦିନକର ସାତ ଯା ଯାକ କହିଲେ ଆଜ ନଈକି ଗାଧୋଇ ଯିବା, ଭଲ ଟିକିଏ ଅଛୁ, ସମସ୍ତେ ଗାଧୋଇବାକୁ ଗଲେ । ସମସ୍ତେ ଗାଧୋଇ ଅଇଲେ, ସାନବୋହୂ ଭଲ ପାହି ଯାଉଚି ବୋଲି ଧଡ଼ପଡ଼ ହୋଇ ଗାଧୋଇ ଗୁଲ ଆସିଲା ବେଳକୁ, ତା ମୁଣ୍ଡରୁ ସୁନା-ଫୁଲଟି ଖସି ପଡ଼ିଲା କେତେବେଳେ, ସେ ଅଉ ଜାଣେ ନାହିଁ । ରଜାଙ୍କ ହାତୀ ପାଣି ପିଇବାକୁ ଆସିଥିଲା ନଈକି, ପାଣି ପିଉଁ ପିଉଁ ସେ ସୁନା—ଫୁଲଟିକି ଦେଖିଲା, ତାକୁ ନେଇକରି ଶୁଣ୍ଢରେ ଯାକିଥାଏ; ଅଉ ଖାଇଲା ନାହିଁ କି ପିଇଲା ନାହିଁ, ସବୁବେଳେ ଝୁରି ହେଉଥାଏ । ଝୁରି ଝୁରି ହାତୀର କଣ୍ଠା ରହିଲା । ଦିନକର ରଜା କହିଲେ ହାତୀଟି କାହିଁକି ଜମା ଖାଉ ନାହିଁ ଝଡ଼ି ଗଲାଣି, ଏହା କହି ତାକୁ ଅଉଁସିଲେ ଅଉଁସୁଁ ଅଉଁସୁଁ ହାତୀ ରଜାଙ୍କ ହାତରେ ସୁନାଫୁଲଟିକି ପକାଇଦେଲା । ରଜା ଦେଖି ବଡ଼ ଆଶ୍ଚର୍ଯ୍ୟ ହେଲେ, ମନ୍ତ୍ରୀଙ୍କି କହିଲେ ମନ୍ତ୍ରୀ, ଏ ଫୁଲ କୋଉଠୁ ଆସିଲା, ତେମେ ଯେବେ ଏ ଫୁଲରୁ କାଲିକି ଭାରେ ଦେବ ତ ଦେବ, ନଇଲେ ତମ ବଂଶ ରହିବେ ନାହିଁ । ମନ୍ତ୍ରୀ ବଡ଼ ଭାବନାରେ ପଡ଼ିଲା, କହିଲା ମୁଁ ଏବେ ସୁନାଫୁଲ ଭାରେ କୋଉଠୁ ଆଣିବି । ବ୍ୟସ୍ତ ହୋଇ ଘରକୁ ଗଲା, ଖାଇଲା ନାହିଁ ପିଇଲା ନାହିଁ, ଗୋଟିଏ ଘରେ ଭାବନାରେ ଶୋଇଲା । ପୁଅମାନେ ବୋହୂମାନେ ଡାକିବାକୁ ଗଲେ, ଜମା ଶୁଣିଲା ନାହିଁ କି କଥା କହିଲା ନାହିଁ । ପଛା ଶେଷରେ ସୁନା-ଫୁଲ ଡାକିଲା । ଏ କହିଲା ଅଜ ଖାଇଲେ କଣ ହେବ, କାଲିକି

ବଣଯାକର ମୁଣ୍ଡ କଟା ହେବ । ସୁନାଫୁଲ କହିଲା ଏମନ୍ତ କଥା କାହିଁକି କହୁଛ ବାପା ? ମନ୍ତ୍ରୀ କହିଲା ରଜାତ ଅବୁଝାମଣା, ହୁକୁମ କରିଛନ୍ତି ମୁଁ କାଲିକି ସୁନାଫୁଲ ଘରେ ଦେବି, ନଇଲେ ସବଂଶରେ ମରିବି ! ସୁନାଫୁଲ କହିଲା ଏହି ଛାରକଥା ପାଇଁ ଏତେ ଭାବନା ! ଘରେ କାହିଁକି, ସାତଭାର ନେବେ । ମନ୍ତ୍ରୀ ଶୁଣି ଟିକିଏ ଆଶ୍ୱସ୍ତ ହେଲା । ସମସ୍ତେ ଖାଇପିଇ ସାରିଲେ, ସୁନାଫୁଲ କଣ କଲା, ଭାଉଜମାନଙ୍କୁ ଡାକି ନେଇ ଗୋଟିଏ ଘର ଲିପାଇ ଆଣିଲା । ସେହି ଘରେ ତାକୁ ପୋତିଦେଲେ, ହଳଦିପାଣି ଛିଞ୍ଚିଦେଲେ, କହିଲେ ଫୁଟ ଗୋ ସୁନାଫୁଲ ଫୁଟ । ସେ ଦିନ ବହୁତ ଫୁଲ ଫୁଟିଲା, ସବୁ ଯାକ ଫୁଲ ତୋଳି ଗଦା କଲେ, ଶେଷକୁ ହଳଦି ପାଣି ମୁଠାଏ ଛିଞ୍ଚିଦେଲେ, କହିଲେ ଉଠ ଲୋ ସୁନାଫୁଲ ଉଠ; ସୁନାଫୁଲ ଉଠି ବସିଲା । ସବୁ ଫୁଲଯାକ ଭାର ୨ କରି ସଜାଡ଼ି ଦେଲେ, ସାତଭାର ଫୁଲ ହେଲା, ତାକୁ ନେଇ ମନ୍ତ୍ରୀ ରଜାଙ୍କ ଦୁଆରେ ଥୋଇଦେଲା । ରଜା ଦେଖି ବଡ ଖୁସି ହେଲେ, ବୁଝି ୨ ବୁଝିଲେ ଯେ ମନ୍ତ୍ରି ଝିଅ ନିଜେ ସୁନାଫୁଲ ଫୁଟେଠ । ରଜା କହିଲେ ମନ୍ତ୍ରୀ ଆମେ ତମ ଝିଅକୁ ବିଭା ହେବା । ମନ୍ତ୍ରୀ କହିଲା ଆପଣଙ୍କୁ ଯେବେ ସୁନ୍ଦର ଦିଶିଲା ତେବେ ବଭୁଦର ହଉ । ରଜା ମନ୍ତ୍ରି ଝିଅ ସୁନାଫୁଲକୁ ବିଭା ହେଲେ । ସେ ରଜାଙ୍କର ଆଉ ସାତ ରାଣୀ ଥାନ୍ତି, ମନ୍ତ୍ରି ଝିଅକୁ ବିଭା ହେବାରୁ ସେମାନଙ୍କୁ ଆଉ ରଜା ଦେଖି ପାରିଲେ ନାହିଁ ଏଇଯାକୁ ଭଲ ଦେଖି ପାରିଲେ । ଦିନକର ରଜା ପାରିଧିକି ଗଲେ, ମନ୍ତ୍ରି ଝିଅକୁ କହିଗଲେ ତମ ସଉତୁଣୀମାନେ ଯେବେ ଫୁଲ ଫୁଟିବାକୁ ଲଗାଇବେ, ତେବେ କେବେ ଫୁଟିବ ନାହିଁ, ତମକୁ ବାଦରେ ମାରି ପକାଇବେଟି । ମନ୍ତ୍ରୀ ଝିଅ ନାହିଁ କଲା । ରଜା ଯୋଉଠୁ ଗଲେ ବାହାରି, ଏ ସାତ ସଉତୁଣୀଯାକ ଆସି, ଝିଅ ସଙ୍ଗେ ଲଗାଇଲେ ତେବେ କେମନ୍ତ ସୁନାଫୁଲ ଫୁଟ ଅଛ ଟିକିଏ ଫୁଟିବଟି, ଆମେ ଦେଖିବା, ଏହା କହି ଝିଅ ସଙ୍ଗେ ଏକ ଜିଦ୍

ଲଗାଇଲେ, ଘର ଘଣ ନୟନ ପକାଇଲେ । ଏ କହୁଲା ହଉ ଫୁଟୁଛ, ତେବେ ଯେତେଜଣ ସେଠିକି ଖୋଳିବ ଆଉ କଢ଼ ଛିଣ୍ଡା-ଇବ ନାହିଁ କି ଡାଳ ଭାଙ୍ଗିବ ନାହିଁ । ଏହା କହିଲା, ଗୋଟିଏ ଘର-ଟିଏ ଲିପାପୋଛା କରାଇ ସେହିଘରେ ଫୁଲ ଫୁଟିଲା; ଏ ସବୁ ବାଦରେ ଫୁଲକଢ଼ ଛିଣ୍ଡାଇ ପକାଇଲେ, ଡାଳ ସବୁଗୁଡ଼ିକ ଭାଙ୍ଗି ନଈରେ ପକାଇ-ଦେଲେ । ଏ ଡାଳ ସବୁ ଭାସି ଯାଇ ସେପାରି ଘାଟରେ ରଜା ଗାଧୋଉଥିଲେ ତାଙ୍କର ହାତରେ ଲାଗିଲା । ରଜା ତାକୁ ଦେଖି ବଡ଼ ବେସ୍ତ ହେଲେ, କହିଲେ ମୁଁ ଏତେବେଳ କହି ଆସିଥିଲି, ଏ ଫୁଟିଲା । ସଉତୁଣୀମାନେ ବାଦରେ ଡାଳଫାଳ ଭାଙ୍ଗି ଫିଙ୍ଗି ଦେଇ-ଛନ୍ତି । ରଜା ସେହିଲାଗେ ବାହାରି ଆସିଲେ ସେଠାରୁ ଘରକୁ । ଘରେ ଆସି ଦେଖନ୍ତି ଯେ ସୁନାଫୁଲ ନାହିଁ । ଆଉ ଭାଉଜାମାନଙ୍କୁ ପଚାରିବାରେ ସେମାନେ ସମସ୍ତେ କହିଲେ ଆମେ ଦେଖିନାହୁଁ । ରଜା ବଡ଼ ମନଦୁଃଖରେ ସେ ଡାଳପତ୍ରଗୁଡ଼ିକ ନେଇ ଗୋଟିଏ ଅରଣ୍ୟରେ ଯାଇ କାନ୍ଦିଲେ । କାନ୍ଦୁଛନ୍ତି ବସି, ରାତି ଅଧ ହେଲାଣି, ଈଶ୍ୱର ପାର୍ବତୀ ତହିଁ ଯାଉଥିଲେ; କାନ୍ଦଣା ଶୁଣିଲେ । ପାର୍ବତୀ କହିଲେ ଆଜି କାହିଁକି 'ପୃଥିବୀଟା ଭାରି ଲାଗୁଛି, ଏ ଅରଣ୍ୟରେ କିଏ ଗୋଟିଏ ଶୋକ କଲାପରି ଶୁଭୁଛି, ଚାଲ ଯିବା ଦେଖିବା । ଈଶ୍ୱର କହିଲେ ଆମର ସେଥିରେ କଣ ଅଛି ? ପାର୍ବତୀ କହିଲେ ଆମେ ଅଉ କେବେ ସୃଷ୍ଟି ରଖିଅଛୁ କାହିଁକି କଷ୍ଟ ବୁଝିବା ନାହିଁ, ଅଉ ଆମର ସୃଷ୍ଟିରେ ଅଛି କଣ ? ଈଶ୍ୱର କହିଲେ ହଉ ତେବେ ଦେଖି ଆସିବା ଚାଲ । ଈଶ୍ୱର ପାର୍ବତୀ ଦୁହେଁଯାକ ଗଲେ, ରଜାଙ୍କୁ ପଚାରିଲେ ତୁ କିଏ ଭୂତ କି ପ୍ରେତ, ଏଠି ବସି କାନ୍ଦୁଛୁ କାହିଁକି ? ରଜା କହିଲେ ମୁଁ ଏ ଦେଶର ରଜା; ଏମନ୍ତି ମୋ ସାନଭାଉଜାକୁ ସଉତୁଣୀମାନେ ମାରି ପକାଇଛନ୍ତି ମୁଁ ତାକୁ ନେଇ ଏଠାରେ କାନ୍ଦୁଛି । ଈଶ୍ୱର ପାର୍ବତୀଙ୍କର ଦୟା ହେଲା, କହିଲେ ତେଣିକି

ମୁହଁରୁଙ୍କ । ରଜା ତେଣିକି ମୁହଁ ଫେରାଇଲେ, ଈଶ୍ୱର ପାଟଙ୍ଗ ଫୁଲପାଣି କରି ତାକୁ ମୁଠା ଛୁଇଁଦେଲେ ଯେ ସୁନାଫୁଲ ଜୀଇ ଉଠିଲା । ଈଶ୍ୱର ପାଟଙ୍ଗ ଅଦେଖା ହୋଇ ଗଲେ । ରଜା ସୁନାଫୁଲକୁ ନେଇ ଘରକୁ ଆସିଲେ, ବଡ଼ ରାଣୀଙ୍କ ମୁଣ୍ଡ ଖୋଳାଇ ଢାହିଁରେ ପକାଇ-ଦେଲେ, ଚଳକଣ୍ଟା ଉପରକଣ୍ଟା ଗ୍ରାହିଦେଲେ । ସୁନାଫୁଲକୁ ନେଇ ଆନନ୍ଦରେ ଘରଦୁଆର କଲେ, ମୁଁ ଗଲାକୁ କଥା ନ କହିଲେ । ମୋ କଥା ସରିଲା ଇତ୍ୟାଦି ।

---

## ପାନସୋରି କଥା ।

ଗୋଟିଏ ସାଧବର ଯେ ଛାର ସାତପୁଅ ସାତବୋହୂ । ସବୁ ସାନ ବୋହୂଟିକୁ କେହି ଦେଖି ପାରନ୍ତି ନାହିଁ । ସାତ ଯା ଯାକ ଗର୍ଭହେଲେ, ବଡ଼ ଛ ଯାଆଙ୍କର ତାହାର ପୁଅ ହେଲା ତାହାରହିଁ ହେଲା, ସାନ ଯାର କିଛି ହୋଇ ନ ଥାଏ । ଏ ଘରର କାମଦାମ ସବୁ କରୁଥାଏ । ଯେଉଁଦିନ କଷ୍ଟ ପାଇଲା, ଶାଶୁକୁ କହିଲା, ସାନ୍ତାଣି ମୋହ ଦେହ କଣ ହେଉଛି । ଶାଶୁ କହିଲା ଯା ଆଗେ ପାଣି ବୋହିଆଣି ସାର ପଛେ କଷ୍ଟ ପାଇବୁ, ଏ ଆଉ କଣ କରିବ ? ସବୁ କାମକରି ସାରିଲା, ଫେର୍ ଶାଶୁକୁ କହିଲା । ଶାଶୁ କଣ କଲା ନା ଅରଟଖଣ୍ଡିଏ ହାତରେ ଦେଲା । ଗୋଟାଏ ବଉଣା (୧) ହେଲା, ତହିଁର ମୁଁକୁ ସୂତା

---

( ୧ ) ପରସ୍ପର ଜଳ ଉ ଯନ୍ତି ଯହିଁରୁ ସୂତା କଟାଯାଏ ।

କାନ୍ଦିଭାଟି ଯା, ଏ ଯୋଉଠିସବୁବେଳେଠି ଜନ୍ମକରୁ, ପୁଅଟିଏ ହେଲେ
ଅଣିବୁ ଝିଅହେଲେ ଫୋପାଡ଼ିଦେଇ ଆସିବୁ ଏ ସେହିପରି ସ୍ତ୍ରୀକାନ୍ଦି
ଗଲା ବାହାର ଯାଇଁ ଗୋଟାଏ ପାନବରଜ ପାଖେ ବରଣାଟିଏ ଥିଲା
ସେଇଠି ଜନ୍ମକଲା, ଝିଅଟିଏ ହେଲା । ଶାଶୂର କହିବା ଝିଅ ହେଲେ
ଫୋପାଡ଼ି ଦେଇ ଆସିବୁ, ଆଉ ନେଇକରି ଯିବ କେମନ୍ତ ? ଝିଅଟିକୁ
କଣକଲା ନା ପାନବରଜ ଭିତରେ ପାନ ଗୁଡ଼ାଏ ପାରି ଦେଲା ତା
ଉପରେ ଶୁଆଇ ଦେଲା, ତା ପାଖରେ ବସି ଗୁଡ଼ାଏ କାନ୍ଦିଲା, ଘରକୁ
ଆସିଲା । ଆରଦେଶ ରଜା ପାରିଧିକି ଆସିଥିଲେ । ଏ ଝିଅଟି ପାନବ-
ରଜରେ କାନ୍ଦୁଚି ଶୁଣିଲେ, କହିଲେ କେଉଁଠି କୁଆଡ଼େ ନାହିଁ, ପିଲା-
ଟିଏ କେଉଁଠି କାନ୍ଦୁଚି ଦେଖିଲ, ଖୋଜିଲ । ଚାକରମାନେ ଗଲେ
ଖୋଜିଲେ, ପାନବରଜ ପିଟାଇ ଦେଖିଲା ବେଳକୁ ଝିଅଟିଏ କାନ୍ଦୁଚି
ତାକୁ ନେଇକରି ଗଲେ ରଜାଙ୍କ ପାଖକୁ । ରଜା କହିଲେ ତାକୁ
ନିଅ ଆମଘରକୁ, ଆମେ ତାକୁ ଝିଅ କରିବା । ନେଇକରି ଗଲେ
ଘରକୁ, ରାଣୀଙ୍କି ଦେଲେ, କହିଲେ ଏଇଟିକି ପାଳ, ଆମର ଝିଅ
କରିବା । ରାଣୀ ପାଳିଲେ, ଝିଅଠାରୁ ଅଧିକ ସ୍ନେହରେ ବଢ଼ାଇଲେ । ତା
ନାଆଁଟି ଦେଇଥାନ୍ତି ପାନପୋଷି । ପାନପୋଷିକି ଦଶ ବାରବରଷ
ହେଲା । ବଡ଼ ହେଲା, ବରଘର ଲଗାଇଲେ, ଆରଦେଶ ରଜାପୁଅକୁ
ବିଭା କରିଦେବେ । ପାନପୋଷି ଖୁବ ସୁନ୍ଦରୀ. ଆରଦେଶ ରଜାପୁଅ
ଆଉ ତାକୁ ଦେଖି ଦାଣ୍ଡକୁ ବାହାରିଲା ନାହିଁ, ସବୁବେଳେ ତା
ପାଖରେ ଥାଏ । ପ୍ରଜାମାନେ କହିଲେ ରଜାପୁଅଟି ଘରୁ ବାହାରିଲେ
ନାହିଁ, କିଛି ବୁଝିଲେ ନାହିଁ, କିପରି ଚଳିବ ? ଏହିପରି ପୋଡ଼ୁଠ,
ସମସ୍ତେ କହିଲେ, ରଜାପୁଅ କଣକଲା, ଧନକରି ଘରୁ ଉଠି
ଘୋଡ଼ାରେ ଚଢ଼ି କୁଆଡ଼େ ଗଲା ବାହାରି । ଯାଇଁ ଆରଦେଶ
ରଜାଗାଁରେ ପହଞ୍ଚିଲା । ସେ ଦେଶ ରଜାଝିଅକୁ ବର ମିଳୁ ନ
ଥାଏ ଯେ ସେ ଧଳାଗାର, କଳାଗାର, ନାଲିଗାର, ନେଳୀଗାର,

ହଳଦିଆଗାର କାଣ୍ଟି ବସିଛି । ଏ ରଜାପୁଅ ଆଉ ଜାଣେ ନା, ଗାର ଡେଇଁ ଦେଇ ଗଲା ବାହାରି । ଏ ରଜାଝିଅର ଧାଈ ତାକୁ ଫେରାଇ ଆଣିଲା, କହିଲା ଆମ ଝିଅଙ୍କର ନିୟମ ଅଛି, ଯେ ଗାରଡେଇଁବ, ସେ ତାଙ୍କୁ ବାହା ହେବ. ତେବେ ଫେରିଆସ ବାହାହେବ । ଧାଈ ଯାଇ ରଜାଙ୍କୁ କହିଲା ଉମଲଖି (୧) ଜୋଇଁ ମିଳିଲାଣି ବାହାଘର କର । ରଜା ସବୁ ଯୋଗାଡ଼ କଲେ, ବାହାଘର ହେଲା । ସେ ରଜାଝିଅର ନାମ ଭାଗବତୀ । ଭାଗବତୀ ଆଉ ଏ ରଜାପୁଅ ବେଭାହୋଇ ସେଇଠି ରହିଲେ । କିଛିଦିନ ଗଲା ବାହାରି, ଭାଗବତୀ ଏ ରଜାପୁଅପାଇଁ ପାନ ଭାଙ୍ଗିଦିଏ, ଲୁଗା କୁଞ୍ଚାଇ ଦିଏ, ଭାତ ବାଢ଼ିଦିଏ, ଚଉପେଡ଼ି ସଜାଡ଼ି ଦିଏ, ଘର ଓଳାଇଦିଏ, ଏ ରଜାପୁଅର ମନକୁ ଆଉ ଆସେ ନାହିଁ । ସବୁବେଳେ ପାନସୋଷିଙ୍କ ବାହୁନି କରି କହେ, କି ପାନ ଭାଙ୍ଗିଚୁ ଲୋ ଭାଗ, ନୁହେ ମୋ ପାନସୋଷି ପରି. କି ଠାଆ (୨) ଭାଙ୍ଗିଚୁ ଲୋ ଭାଗ, ନୁହେ ମୋ ପାନସୋଷି ପରି, କି ଭାତ ବାଢ଼ିଚୁ ଲୋ ଭାଗ, ନୁହେ ମୋ ପାନସୋଷି ପରି,କି ଲୁଗା କୁଞ୍ଚିଚୁ ଲୋ ଭାଗ, ନୁହେ ମୋ ପାନସୋଷି ପରି, ଏହିପରି ସବୁଦିନେ ବାହୁନେ । ଭାଗବତୀ ଆଉ ଏ ରଜାପୁଅ ମନକୁ ଆସେ ନାହିଁ । ଭାଗବତୀ କହିଲା ଯାଙ୍କର ଗୋଟାଏ ପାନସୋଷି । ଏ କେଡ଼େ ସୁନ୍ଦର ଯେ ଏମନ୍ତ, ମତେ ସବୁବେଳେ ଖୁଣିଲେ । ମନକଥା ମନରେ ଥାଏ, ଦିନେ ରଜାପୁଅକୁ ପଚାରିଲା, ହେ ଉମଗାଁରେ କଣ ମିଳେ ନାହିଁ । ଏ କହିଲା ଆମର ରଜାରାଇଜ, ଅପୂରୁବ କଣ ? ସବୁ ମିଳେ ଯେ ଏକା ପଚ ତାଳପତ୍ର ଝିଙ୍କାଶଙ୍ଖା ମିଳେ ନାହିଁ । ଭାଗବତୀ କଣ କଲା, ଗୁରୁ ପାଞ୍ଚ ଠଙ୍କାର

୧ । ଉମ ସମାନ

୨ । ଠାଆ — ଭୂମି ଉପରେ ମଣ୍ଡଳ ହାବ ଚିତ୍ରିତ ପଦ୍ମଫୁଲ ଇତ୍ୟାଦି ଅଙ୍କିତ ସ୍ଥାନ ଏହା ଉପରେ ଭୋଜନସ୍ଥାଳୀ ରଖାଯାଏ ।

ପଶ୍ଚ ତାଳପତ୍ର ନ୍ତି ଶୀଶଙ୍ଖା କଣି ଅଣିଲା, ଜ୍ଞାନଦେଯ୍ୟୀ ମାଲୁଣୀଙ୍କ ଡାକ ଅଣିଲା. ମନପବନ ଡଙ୍ଗା ଖଣ୍ଡେ ଅଣିଲା, ମାଲୁଣୀକ କହିଲା ତୁ ଅର ଦେଶ ରଜାଙ୍କୁ ଏ ସବୁ ନେଇକରି ଯିବୁ, ତାଙ୍କଠାରୁ ବନ୍ଦୀ କରିବୁ । ସମସ୍ତେ ଅସିବେ ନେବାକୁ, ତୁ କହିବ ଅଗେ ରାଣୀ ଆସି ନେଲେ ମୁଁ ପଛେ ସମସ୍ତଙ୍କୁ ଦେବି । ଯେଉଁଠି ରାଣୀ ଆସି ଡଙ୍ଗା ଉପରେ ବସି କିଣିବାକୁ ଧରିବ, ତୁ ରାଣୀଙ୍କ ନେଇ ଚାଲିଆସିବୁ । ଜ୍ଞାନଦେଯ୍ୟୀ ମାଲୁଣୀ ଯାଇ ସେହିପରି କହିଲା, ସମସ୍ତେ ଆସି ପାନସୋଷ୍ଠିଙ୍କୁ ଡାକିଲେ, ଆପ ତେମେ ଅଗ ନେଲେ ସମସ୍ତେ ପଛେ ନେବେ । ପାନସୋଷ୍ଠି ଗଲା ଶାଶୁ ପାଖକୁ କହିଲା ମୁଁ କିଣିବାକୁ ଯାଉଛି । ଶାଶୁ ଶଶୁରଙ୍କୁ ଆଉ ଜମା ଦିଶୁନାହିଁ ପୁଅକୁ ଝୁରି । ପାନସୋଷ୍ଠି ଯେଉଁଠି କହିଲା କିଣିବାକୁ ଯିବି, ଶାଶୁ କହିଲା ହଉ ଯା । ପାନସୋଷ୍ଠି ଯାଇ ଡଙ୍ଗା ଉପରେ ବସିଲାକ୍ଷଣି, ମାଲୁଣୀ କହିଲା ଯେବେ ସତ୍ୟଯୁଗର ମନପବନ ଡଙ୍ଗା ହୋଇଥିବୁ, ତେବେ ଏହାଙ୍କୁ ନେଇ ପବନ ବେଗରେ ଚାଲି ଯିବୁ । ଏହା କହିଲାକ୍ଷଣି ଡଙ୍ଗା ଚାଲିଲା ଯେ ଆସି ତାରାବତୀ ରାଜ୍ୟରେ ପହଞ୍ଚିଲା । ତାରାବତୀ ପାନସୋଷ୍ଠିଙ୍କ ନେଇ ଗୋଟିଏ ଘରେ ଲୁଚାଇ କରି ରଖାଇଲା । ତହିଁ ଆରଦିନ ପାନସୋଷ୍ଠି ହାଣ୍ଡି ଘର ଓଳାଇ ଇଲା, ପାନ ଭଙ୍ଗାଇଲା, ଭାତ ବଢ଼ାଇଲା, ଲୁଗା କୁଞ୍ଚେଇଲା, ସବୁ କରାଇଲା, ପାନସୋଷ୍ଠିଙ୍କ ସେହି ଅଡ଼ା ଘରେ ଗୁଣ୍ଡେଦେଇ ଆସିଲା । ରଜା ପୁଅ ସେଦିନ ସବୁ ଦେଖିଲା, ଝୁଣିଲା ନାହିଁ, ଭାତ ଖାଇଲା, ଗଲା ବାହାରି, ତାରାବତୀ ଭାବିଲା ହଁ ଏହାଙ୍କୁ ସବୁବେଳେ ଝୁରିଲେ, ମତେ ଦେଖି ପାରିଲେ ନାହିଁ । ଏହା ମନରେ ପାଇ ପାନସୋଷ୍ଠିଙ୍କ ବନସ୍ତକୁ ଡାକିନେଲା, ହାଣି ପକାଇ ଆସିଲା । ସେ ବନସ୍ତରେ କଣ ହେଲା, ପାନ-ସୋଷ୍ଠିର ପେଟ ପୋଖରୀ ହେଲା, ପିଠି ପଥର ହେଲା, ମୁଣ୍ଡ ମଣ୍ଡପ ହେଲା, ହାତ ଫୁଲଗଛ ହେଲା, ଗୋଡ଼ କଦଳୀଗଛ ହେଲା, ଆଖିଦୋଟି ଶୁଆ ଶାରୀ ହେଲେ, ଏହିପରି ହୋଇଥାଏ । ଗାଈଜଗା ପିଲାଏ ଏଇଠିକୁ

ଫୁଲ ନଥାନ୍ତି ଖେଳନ୍ତି । ଦିନକର ରଜାଙ୍କର ମାଳୀ, ଫୁଲ ଖୋଜି ଖୋଜି ଆଉ କୋଉଠି ଫୁଲ ପାଇଲା ନାହିଁ, ଦେଖିଲା ଗାଈ ଜଗା ପିଲାଏ ଫୁଲ ନେଇ ଖେଳୁଛନ୍ତି । ମାଳୀ କହିଲା ଆରେ ପିଲାଏ ତେମେ କୋଉଠୁ ଏ ଫୁଲ ଆଣିଲ, ମୁଁ ଏତେ ସକାଳ ଖୋଜୁଛି ପାଉନାହିଁ । ସେମାନେ କହିଲେ ଜାଣିଛ ସେ ବନସ୍ତରେ କେତେ ଫୁଲ ଫୁଟିଛି ପାଉନାହଁ ? ମାଳୀ ଫୁଲ ଆଣିବାକୁ ଗଲା । ଆଗ ହୋଇ ପଥର ଉପରେ ଠିଆ ହେଲାକ୍ଷଣି, ପାନସୋଗି କହିଲା, 'ଧୀର ହୋଇ ଠିଆହୁଅ ହେ ମାଳୀ, ମୋ ପିଠିକି କାଟିବଟି, ମୁଁ ଯେଉଁ ସାଆନ୍ତ ହାତ ଧରିଥିଲି ସେ ଅତି ସୁକୁମାର ଟି' । ମାଳୀ ଏଣିକି ତେଣିକି ଅନାଇଲା ଦେଖିଲା କେହି ନାହିଁ । ସେ ଖଣ୍ଡିରେ ପଶି ଗୋଡ଼ ଧୋଇଲା ବେଳକୁ ଫେର ପାନସୋଗି କହିଲା, 'ଧୀରେ ଗୋଡ଼ ଧୁଅ ହେ ମାଳୀ ମୋ ପେଟକୁ କାଟିବ ଟି, ମୁଁ ଯେଉଁ ସାଆନ୍ତ ହାତ ଧରିଥିଲି ସେ ଅତି ସୁକୁମାର ଟି' । କଦଳୀଗଛ ପତର ତୋଳିଲା ବେଳକୁ ସେହିପରି କହିଲା, 'ଆରେ ମାଳୀଭାଇ ଧୀରେ ଚିରିବୁଟି; ମୋ ଗୋଡ଼କୁ କାଟିବଟି, ଯେଉଁ ସାଆନ୍ତର ହାତ ଧରିଥିଲି ସେ ଅତି ସୁକୁମାର ଟି । ମାଳୀ ସେଠାରୁ ଗଲା, ଫୁଲ ତୋଳିଲା ବେଳକୁ କହିଲା, 'ଅରେ ମାଳୀଭାଇ ଧୀରେ ତୋଳିବୁ ଟି ମୋ ହାତକୁ କାଟିବ ଟି, ମୁଁ ଯେଉଁ ସାଆନ୍ତ ହାତ ଧରିଥିଲି ସେ ଅତି ସୁକୁମାର ଟି' । ମଣ୍ଡପ ଉପରେ ଚଢ଼ିଲା-ବେଳକୁ କହିଲା, 'ଅରେ ମାଳୀଭାଇ ଧୀରେ ଚଢ଼ିବୁଟି, ମୋ ମୁଣ୍ଡକୁ କାଟିବଟି ଯେଉଁ ସାଆନ୍ତର ହାତ ଧରିଥିଲି ସେ ଅତି ସୁକୁମାର ଟି' । ସେମନ୍ତ ଶୁଖିଲା ଖଣ୍ଡି ଧରିଲା ବେଳକୁ ଶୁଆଶାରୀ କହିଲେ 'ଧୀରେ ଧରିବଟି, ଅହେ ମାଳୀଭାଇ ମୋ ଅଙ୍ଗକୁ କାଟିବ ଟି, ଯେଉଁ ସାଆ-ନ୍ତର ହାତ ଧରିଥିଲି ସେ ଅତି ସୁକୁମାର ଟି' । ମାଳୀ ଗଲା ରଜାଙ୍କ ଆଗରେ କହିଲା ମଣିମା, ଗୋଟିଏ କଥା କହିବାକୁ ଭାରି ଭୟ ଲାଗୁଛି । ରଜା କହିଲେ କଣ କହ, ଭୟ କାହିଁକି କରୁଛୁ । ମାଳୀ

ସବୁ କହିଗଲା । ରଜା କହିଲେ ଚାଲ ଦେଖିବା । ମାଳୀ ଆଉ ରଜା, ଦୁହେଁଯାକ ସେ ବନସ୍ତକୁ ଗଲେ, ରଜା ଛୁଆ କହିଲେ ମାଳୀ ସେହିପର ପଥର ଉପରେ ଛାଡ଼ି ଦେଲା, ପାଣିରେ ଗୋଡ଼ ଧୋଇଲା, ଆଉ ସବୁ କଲା । ପାନସୋଖି ଆଗପର ସବୁ କହିଲା । ରଜା ଶୁଣିଲେ ଜାଣି ପାରିଲେ ଭାଗ୍ୟବତୀ ପାନସୋଖିକି ଏଠାରେ ହାଣିଛି । ମାଳୀକି ପଠାଇ ଦେଲେ, କହିଲେ ମୁଁ ଏଠାରେ ଥିବାର ତୁ ଆଉ କାହା ଆଗେ କହିବୁ ନାହିଁ, ଯେବେ କହିବୁ କାହାଆଗେ ତୋ ବଂଶକୁ ଶୂଳସ୍ଥାପଦାରେ ଶୂଳ ଦେବି । ମାଳୀ ଘରକୁ ଥିଲା ବାହାରି, କାହା ଆଗେ କିଛି କହିଲା ନାହିଁ । ରଜା ସେହି ପୋଖରୀକୂଳେ ବସି କାନ୍ଦୁ-ଥାନ୍ତି । କାନ୍ଦି କାନ୍ଦି ରାତି ଅଧ ହେଲାଣି, ଈଶ୍ୱର ପାର୍ବତୀ ଆକାଶରେ ଉଡ଼ି ଯାଉଥାନ୍ତି, ପାର୍ବତୀ କହିଲେ ରହିଥାଅ ରହିଥାଅ କିଏ ଗୋଟିଏ କାନ୍ଦୁଛି ଏତେବେଳେ, ଈଶ୍ୱର କହିଲେ ଚାଲ ହୋ ଆମର ସେଥିରେ କଣ-ଅଛି ? ପାର୍ବତୀ କହିଲେ ଆଉ ଆମେ ସୃଷ୍ଟି କାହିଁକି କରିଅଛୁ ? ଲୋକଙ୍କ ଭଲମନ୍ଦ କିଏ ବୁଝିବ ? ଈଶ୍ୱର ପାର୍ବତୀ ଦୁହେଁଯାକ ବନସ୍ତ ଭିତରକୁ ଗଲେ ରଜାପାଖକୁ, ପଚାରିଲେ ତୁ କିଏ, ଭୂତ କି ପ୍ରେତ କି ଡାହାଣୀ କି ଚିରଗୁଣୀ ତୁ କିଏ ? ରଜା କହିଲେ ମୁଁ କେହି ନୁହେଁ ଅମୁକଦେଶ ରଜାପୁଅ, ଏପରି ଏପରି ପାନସୋଖିକି ବାହା ହୋଇଥିଲି ଆଉ ଆଉ ସବୁ କଥା କହିଗଲେ । ଈଶ୍ୱର ପାର୍ବତୀ କହିଲେ ହଉ ତୁ ତେଣିକି ମୁହଁ ବୁଲା, ରଜା ତେଣିକି ମୁହଁ ବୁଲାଇଲାରୁ ଫୁଲପାଣି କରି ତିନି ମୁଠା ଛିଞ୍ଚିଦେଲେ ଯେ ପାନସୋଖି ଜୀଇ ଉଠିଲା । ଈଶ୍ୱର ପାର୍ବତୀ ଉଭେଇ ଗଲେ । ଏ ରଜାପୁଅ ପାନ-ସୋଖିକି ନେଇ ଆସିଲା ବାହାରି ଆପଣା ରାଜ୍ୟକୁ, ଭାଗ୍ୟବତୀକି ଛାଡ଼ିଦେଇ ଆସିଲା । ପାନସୋଖିକି ନେଇ ଘରଦ୍ୱାର କଲା, ସୁଖରେ ରହିଲା, ମୁଁ ଗଲାକୁ କଥା କହିଲା ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।

## କଳାରଂଜନ କଥା ।

ଗୋଟିଏ ଦେଶରେ ରଜାପୁଅ, ମନ୍ତ୍ରୀପୁଅ, ସାଧବପୁଅ, କୁଟୁଆଳ-ପୁଅ ଏ ଚାରି ସଙ୍ଗାତ । ଦିନକର ଚାରିହେଁଯାକ ବିଚାର କଲେ ବିଦେଶ କରିଯିବା, ଗୋଟିଏ୨ ଘୋଡ଼ା ଚଢ଼ିଲେ ଗଲେ । ଯାଉ୨ ଗୋଟାଏ ଅପୁରୁଣୀ ଦୁଆରେ ସଞ୍ଜ ହେଲା । ଅପୁରୁଣୀକି କହିଲେ ମାଉସୀ ଟିକିଏ ଘର ଯେଗା ଦେବୁ ? ଅପୁରୁଣୀ ବୁଢ଼ୀ କହିଲା ହଉ ରହ । ଘର ଯେଗା ଦେଲା ଶୋଷାଇ କରିବାକୁ ଛାଲି ଚାଉଳ, ଡାଣ୍ଡି, ପରିବା ହେଣ୍ଡିକା ସବୁ ଦେଲା । ଏମାନେ ଗୋଟାଏ ଘରେ ରହି ଶୋଷାଇ ବାସ କରୁଛନ୍ତି ବୁଢ଼ୀ ଅପୁରୁଣୀ ଆଉ ଗୋଟାଏ ଘରେ ତାର ଶୋଷାଇବାସ କରିବାକୁ ଗଲା । ମନ୍ତ୍ରୀପୁଅ ତାହାଙ୍କ ଦୁଆରକୁ ଯାଇ ଦେଖେ ଯେ ଅପୁରୁଣୀ କଣ କରୁଛି ନା ଗୋଟାଏ ଘୋଡ଼ା ଚୁଲିକି ମୁହାଁଇ ଦେଇଛି, ଆଉ ଗୋଟାକରେ ପାଣି ଥଣୁଛି, ଚାଉଳ ଧୋଉଛି ଏହିପରି ସବୁ ଘରକାମଦାମ କରୁଛି । ଏ ଯାଇ ଆଉ ତିନି ସଙ୍ଗାତଙ୍କୁ କହିଲା ହେ ସଙ୍ଗାତ ଏ ଅପୁରୁଣୀ ଘରୁଟାଏ, ଚାଲ ଆମର ଏଠାରୁ ଯିବା ବାହାରି । ଚାରିହେଁଯାକ ଆଉ ଖାଇଲେ ନାହିଁ, ପିଇଲେ ନାହିଁ, ଶୋଷାଇ ଛାଡ଼ି ଦେଇ ଘୋଡ଼ା ଉପରେ ବସି ଗଲେ ବାହାରି, ବୁଢ଼ୀ ଅପୁରୁଣୀ ଯାହିଁ ଜାଣିଲା ଏମାନେ ଯାଉଛନ୍ତି ବାହାରି ଲଣ୍ଡଭଣ୍ଡ ହୋଇ ଘରୁ ଯୋଉଷ ହ ଯେତେ ଘନ ଆସିଲା, ମନ୍ତ୍ରୀପୁଅ ଘୋଡ଼ା ଲାଙ୍ଗୁଡ଼ରେ ବାନ୍ଧି ଦେଲା, କହିଲା ତୁ ଯେମନ୍ତ ସତ୍ୟଯୁଗର ଯୋଉଷ ହୋଇଥିବୁ, କଣ୍ଟି୨ ଯାଉଥିବୁ, ଗଛ ଉଠି୨ ଯାଉଥିବ, ଫୁଲ ଫୁଟି୨ ଯାଉଥିବ । ଏହା କହି ଘରକୁ ଆସିଲା ଝିଅମାନଙ୍କୁ ଡାକି ଛଡ଼ିଲା କୁଆଡ଼େ ଯାଇଛ ଲୋ, କି ସୁନ୍ଦର ହେଣ୍ଡା ଆଣି ରଖିଥିଲି,

ଖାଇଥାନ୍ତି କୁଅଡ଼େ ଗଲ । ଏମାନେ ଡାକ ଶୁଣି ଦଉଡ଼ି ଆସିଲେ କହିଲେ ମା କଣ, କାହିଁକି ଡ଼ାକୁଚ ? ଏ କହିଲା ହେମେମାନେ ଯାଅ, ଦଉଡ଼ ମୁଁ ଘୋଡ଼ା ଲାଙ୍ଗୁଡ଼ରେ ସୋରଷ ବାନ୍ଧି ଦେଇଚି, ଗଛ ଉଠି ଯାଉଥିବ, ଫୁଲ ଫୁଟି ଯାଉଥିବ, ସେଇ ବାଟକୁ ଗୁହିଁ ଗୁହିଁକା ଦଉଡ଼ିବ ଟେ ରେ ସେ ଗୁରୁ ବେଶ୍ରାଙ୍କୁ ପାଇବ । ଏ ସାତ-ଝିଅ ଯାକ ଦଉଡ଼ିଲେ, ଯାଇ ଘୋଡ଼ା ପଛରେ ଲାଗିଲେ । ଏମାନେ ଅନାଇ ଦେଲାବେଳକୁ ଅସୁରୁଣୀ ସାତଟା ଆସି ଘୋଡ଼ା ପଛରେ ଲାଗି ଗଲେଣି । ଏ ଗୁରୁ ସଙ୍ଗାତ କହିଲେ ନିଶ୍ଚୟ ଯେମନ୍ତ ସତ୍ୟଯୁଗ ହୋଇଥିବ ଆମ୍ଭ ପଛରେ ଖାଲ କଣ୍ଟାବଣ ହୋଇଯିବ । କଣ୍ଟାବଣ ହୋଇଗଲା ଯୋଉଠୁ ସବା ବଡ଼ ଭଉଣୀ ରହିଲା ଅଜ ଛ ଭଉଣୀ ଫେରି ଆସିଲେ, କଣ୍ଟାରେ ପଶି ପାରିଲେ ନାହିଁ । ଏ କଣ କରୁଥାଏ କଣ୍ଟା ସବୁ ଦାନ୍ତରେ କାଟିପକାଉଥାଏ, ଏମାନଙ୍କ ପଛେ ଦଉଡ଼ୁ-ଥାଏ । ଫେର୍ ଏମାନଙ୍କ ପଛରେ ଲାଗିଗଲା । ଏମାନେ କହିଲେ ଯେବେ ସତ୍ୟଯୁଗ ହୋଇଥିବ ସବୁ ଅଗ୍ନିମୟ ହୋଇଯିବ । ସବୁ ଅଗ୍ନିମୟ ହୋଇଗଲା । ଅସୁରୁଣୀ ଛେପ ପକାଇ ପକାଇ ନିଆଁକୁ ଲିଭାଇଦେଲା, ଏମାନଙ୍କ ପଛରେ ମିଶି କଟୁଆଳ ପୁଅକୁ ଆଉ ତା ଘୋଡ଼ାକୁ ଖାଇଲା । ବାକି ତିନି ସଙ୍ଗାତ ପଳାଉଛନ୍ତି, ଏ ତାଙ୍କ ପଛେ ଦୌଡ଼ି ସାଧବପୁଅକୁ ମନ୍ତ୍ରୀପୁଅକୁ ଖାଇଦେଲା । ରଜାପୁଅ ସମସ୍ତଙ୍କ ଆଗରେ ଥାଏ । ଯେଉଁଠାରେ ଗୋଟାଏ ଆମ୍ବଗଛ ଥିଲା ତହିଁରେ ଚଢ଼ିଗଲା କହିଲା ହେ ବୃକ୍ଷରାଜ, ନିଶ୍ଚୟ ସତ୍ୟଯୁଗର ଯେବେ ହୋଇଥିବୁ ତୁ ଫାଟି ଯିବୁ ମୁଁ ପଶିଯିବି । ରଜାପୁଅ ଆମ୍ବଗଛ ଭିତରେ ରହିଲା, ଅସୁରୁଣୀ ତା ଘୋଡ଼ାଟିକି ଖାଇଦେଇ ସେହି ଗଛମୂଳେ ବସି ରହିଲା । ଗୋଟିଏ ଦିବ୍ୟସୁନ୍ଦର ରାଣୀ ବେଶଧରି ବସିଲା, ମିଛେ କାନ୍ଦୁଥାଏ । ରଜା ଆସିଥିଲେ ପାରଧିକି, ତାଙ୍କ ଉପରେ ଲୁହ ପଡ଼ିଲା । ରଜା କହିଲେ

ଶୁଣିଥିଲୁ, ଶୁଣିବୁଝି କାହା ଲକ୍ଷ କନ୍ୟା । ଶୁଣି ଶୁଣି ଶୁଣିଲା, କହିଲା ଶୁଣ ମୁଁ ଲକ୍ଷ । ରଜା ସେଉଠୁ ସେ ଅସୁରୁଣୀକୁ ସାଙ୍ଗରେ ନେଇ ଘରକୁ ଚଳେ, ବାହା ହେଲେ ରହିଲେ । ଅସୁରୁଣୀ ରଜାକୁ କହିଲା ମୁଁ ଯେଉଁ ଆମ୍ବଗଛତଳେ ବସିଥିଲି, ତାକୁ ଆଣି ମୋ ଆଗରେ ଗଦାକର । ରଜା ଧୋବାକୁ ହୁକୁମ ଦେଲେ ଗଛକୁ କାଟିଆଣି ରାଣୀଙ୍କ ଆଗେ ଗଦାକରିବାକୁ । ଧୋବା ଗଲେ ଗଛକୁ ହାଣିଲେ । ସେ ଚୋପାପୁଅର ନା କଳାବଜନ । ସେ ଗଛରେ ଥାଇ କହିଲା, ତୁ ଯେମନ୍ତ ସତ୍ୟଯୁଗର ଆମ୍ବଗଛ ହୋଇଥିବୁ, ଏହିକ୍ଷଣି କେଣ୍ଡେଏ ବଉଳିବୁ, ଚଣା ଫୁଟିବ, ଆମ୍ବ ହେବ, ପାଚିବ ମୁଁ ତହିଁରେ ପଶିବି; ସେ ଆମ୍ବଟି ଏହି ବେଣ୍ଟପୋଖରୀରେ ଝୁଡ଼ିପଡ଼ିବ । ସତକୁସତ ସେହିଅ ହେଲା, କଳାବଜନ ଆମ୍ବ ଭିତରେ ପଶି ବେଣ୍ଟପୋଖରୀରେ ଝୁଡ଼ି ପଡ଼ିଲା । ଧୋବାମାନେ ସେ ଗଛକୁ ହାଣିହୁଣି ରାଣୀଙ୍କ ଆଗେ ଜମା କରିଦେଇଗଲେ । ଅସୁରୁଣୀ ଖଣ୍ଡକୁ ଖଣ୍ଡ କାଠ ଚଡ଼ମଡ଼ କରି ଚୋବାଉଥାଏ, କହୁଥାଏ କାଠଉଇଖିଆ ଏଥିରେ ତ ନାହିଁ ଏହିପରି କରି ଗଛର କାଠ ଚୋବାଇଲା । ଯେଉଁ ଧୋବା କାଠକାଟି-ବାକୁ ଆସିଥିଲେ ସେ କହିଲେ ମଣିମା, ଗୋଟିଏ କଥା କହିବାକୁ ଭୟ ଲାଗୁଛି, ଆମେ ଯେତେବେଳେ ସେ ଗଛକୁ ପକାଉଥିଲୁଁ ସେ ଗଛ ସେହିକ୍ଷଣି ବଉଳିଲା, ଚଣା ହେଲା, ଗୋଟିଏ ଆମ୍ବ ହେଲା ପାଚିଲା, ସେ ପୋଖରୀରେ ଝୁଡ଼ି ପଡ଼ିଲା । ଅସୁରୁଣୀ କହିଲା ସେଇ-ଥିରେ ତ କାଠଉଇଖିଆ ଥିଲା ବାହାର ଏଥିକି କେଉଁଠୁ ଆସିବ ? ରାଣୀ ରଜାଙ୍କୁ କହିଲା, ଗଛମୂଳେ ସେ ଯେଉଁ ବେଣ୍ଟପୋଖରୀ ଅଛି ତହିଁରେ ଯେତେକ ମାଛ କଇଁଛ ଗେଣ୍ଡା ଅଛନ୍ତି ମୋ ପାଖକୁ ସବୁ ଆସିବ, ଯଙ୍କ ଛଡ଼ା । କେଉଟ ଗଲେ ପୋଖରୀଟାର ଟାଣି ବୁହାଇଲେ, ଯେତେ ମାଛ କଇଁଛ ଥିଲେ ସବୁ ଆଣି ଅସୁରୁଣୀକି ଦେଲେ, ଆଉ ବଡ଼ ମାଛ ଦୋଟି, ତାଙ୍କ ନା ରାଘବ ଭଳକ, ସେ ଦୋଟିଙ୍କ ବଡ଼ରାଣୀଙ୍କ

ପାଖରେ ଦେଲେ। ବଡ଼ରାଣୀ ରାନ୍ଧବ ମାଛକୁ କାଟିଲା ବେଳକୁ କଳାଗଜନ ଛଣ୍ଡି ଉପରେ ଥାଇ ବୋଇଲା, ମା ଧୀରେ କାଟିବ ହେ, ମୁଁ କାଣି ହୋଇଯିବି। ବଡ଼ରାଣୀ ମାଛଉପରେ ମନ୍ତ୍ରପଢ଼ିଗଣ୍ଡି ଶୁଣି ଧୀରେ ବେକଠାଉଁ କାଟିଲାବେଳକୁ କଳାଗଜନ ବାହାର ପଡ଼ିଲା କହିଲା ତେମେ ମୋର ଧର୍ମକୁ ମା, ମୁଁ ତମର ଧର୍ମର ପୁଅ, ଅସୁରୁଣୀର ସବୁକଥା କହିଗଲା। ବଡ଼ରାଣୀ ଶୁଣିଲେ, ପୁଅଟିକୁ ରଖିଲେ, ରହିଲେ, ଏଣେ ଅସୁରୁଣୀ ସବୁ ବେଣ୍ଟାକୁ କଇଁଛ ପର୍ଯ୍ୟନ୍ତ ଯୁଦ୍ଧ ଥାଏ, ଖାଇ ଦେଉଥାଏ, କହୁଥାଏ ଏଥିରେତ ସେ କାଠେଇଖିଆ ନାହିଁ କୁଅରେ କି? ଏହାପରେ ସବୁ ପୋଖରୀର ମାଛ କଙ୍କଡ଼ା ସବୁ ଖାଇଲା। କେତେବେଳପରେ ଶୁଣିଲା ବଡ଼ରାଣୀଙ୍କ ଉଆସକୁ ଯୋଡ଼ାଏ ବଡ଼ମାଛ ଯାଇଛି, ସେଥିରୁ ଗୋଟାଏ ପୁଅ ବାହାରିଛି କହିଲା ସେଥିରେତ କାଠେଇଖିଆ ଗୁହ୍ନିଗଲା। ଏହା କହିଲା ଭୁକ ହୋଇରହିଲା। କତିଦିନ ଗଲା ଅସୁରୁଣୀର ଗର୍ଭ ହେଲା, ତାର ପୁଅଟିଏ ହେଲା। ପୁଅଟିକି ଦଶ ବାର ବରଷ ହୋଇଗଲା ଯାଉଁ ଘୋଡ଼ା ଚଢ଼ି ଶିଖିଲା, କାଣ୍ଡମାର ଶିଖିଲା। ବଡ଼ରାଣୀ ପୁଅ କଳାଗଜନ ଯାଙ୍ଗେ ଘୋଡ଼ା ଦଉଡ଼ି କରେ, କାଣ୍ଡ ମାରେ। କଳାଗଜନ ଯେମନ୍ତ ଘୋଡ଼ା ଦୌଡ଼ି କରିପାରେ, ଯେପରି କାଣ୍ଡ ମାରିପାରେ, ଅସୁରୁଣୀପୁଅକୁ ଯେମନ୍ତ ଅସେ ନାହିଁ। ଅସୁରୁଣୀପୁଅର ସୁନାନଳ, ସୁନାକାଣ୍ଡ, କଳାଗଜନର ବାଉଁଶନଳ ବାଉଁଶକାଣ୍ଡ। କଳାଗଜନ ବାଉଁଶକାଣ୍ଡକୁ ଯୋଉଟିକି ଲାଖ କରେ, ସେଇଠି ପଡ଼େ, ଅସୁରୁଣୀପୁଅର ସୁନାକାଣ୍ଡ ଏଣେତେଣେ ହୋଇ ଚାଲିଯାଏ। ଦିନେ ଅସୁରୁଣୀପୁଅ କଳାଗଜନକୁ କହିଲା, ଭାଇ ତେମେ ଏ କାଣ୍ଡକୁ ମାର, ମୁଁ ତମ କାଣ୍ଡ ମାରେ। କଳାଗଜନ ସୁନାକାଣ୍ଡକୁ ମାରଦେଲା ଯେ ଯାଇ ଅସୁରୁଣୀ ଘରଦ୍ୱାରେ ପଡ଼ିଲା, ବୁଢ଼ୀ ଅସୁରୁଣୀର ସାନଝିଅ ଗୋଟାଇକରି ରଖିଥାଏ। ଅସୁରୁଣୀପୁଅ ଯାଇ ମା ଆଗରେ କହିଲା, ଭାଇ ମୋ

ଖାଣ୍ଡ କୁଆଡ଼େ ମାରଦେଲ ଆଜ ମାଗି ମାଗି ମତେ ଦେଉନାହିଁ । ଅପ୍ସରୁଣୀ କଳାବ୍ରଜନକୁ ଡକାଇ କହିଲା ମୋ ପୁଅର ଖାଣ୍ଡ ଆଣିଦେ, ନଇଲେ ତୋର ମୁଣ୍ଡକାଟ ହେବ । ଏ ଯାଇଁ ବଡ଼ରାଣୀ ଆଗରେ କହିଲା, ମା ମତେ ଛ ମାସ ଛୁଟି ଦିଅ, ମୁଁ ତାଙ୍କ ଖାଣ୍ଡ ଆଣିଦେବି । ଏ କାହାଣୀମାନ ଶୁଣି ହୋଇ ବିଦାୟ ଦେଲା । କଳାବ୍ରଜନ ଘୋଡ଼ାରେ ଚଢ଼ି ବାହାରିଲା, ଯାଇ ପାଶରଜା ଦେଶରେ ପହଞ୍ଚିଲା । ପାଶରଜା ଝିଅକୁ ବର ମିଳୁ ନ ଥାଏ ଯେ ସେ ଚୁଆ ଗାରେ ଚନ୍ଦନ ଗାରେ ଗନ୍ଧକ ଗାରେ ତିନି ଗାର କାଟିଦେଇ ବସିଛି, କଳାବ୍ରଜନ ସେ ଗାର ଡେଇଁ ଦେଇ ଘୋଡ଼ା ନେଇଗଲା । ପାଶରଜାଝିଅ ଧାଇଁ ଦଉଡ଼ି ଆସି କଳାବ୍ରଜନକୁ ଡାକିଲା କହିଲା କୁଆଡ଼େ ଯାଉଚ ଫେରି ଆସ; ଆମ ଦେଉଙ୍କର ସତ୍ୟ ହୋଇଛି ଏ ଗାର ଯେ ଡେଇଁବ ସେ ତାଙ୍କୁ ବିଭା ହେବ । କଳାବ୍ରଜନ କହିଲା ହଉ ତେବେ ରହୁଚି । ରଜାଙ୍କ ପାଖକୁ ଖବର ଗଲା; ବିଭାଘରର ଯୋଗାଡ଼ ହେଲା, ବିଭାଘର ହେଲା । ଚତୁର୍ଥୀ ଦିନ ରାତିରେ କଳାବ୍ରଜନ ପାଶରଜା ଝିଅକୁ କହିଲା ହେ ତମ ରାଜ୍ୟରେ ପଟେ ସୁନାଖାଣ୍ଡ ପଡ଼ିଚି କି ? ଏ କହିଲା ନାହିଁ ଆମ ଦେଶରେ ପଡ଼ିନାହିଁ, ଅପାଶଇଜରେ ପଡ଼ିଥିବ । ଏ କହିଲା ଅପାଶଇଜ କୋଉଠି, ଏଠିକି କେତେ ବାଟ ? ପାଶରଜାଝିଅ କହିଲା ବାଘରଜା ଦେଶରେ, ଏଠିକି ପାଏ ବାଟ ହେବ । ତହିଁ ଆରଦିନ କଳାବ୍ରଜନ ବାଘରଜାଦେଶକୁ ବାହାରିଲା, ଯାଉଚି ବାଘରଜାଝିଅକୁ ବର ମିଳୁ ନ ଥାଏ ଯେ ସେ ସେହ୍ନପର ତିନିଗାର କାଟିଦେଇ ବସିଚି, ସେ ଗାର ଡେଇଁ ଚାଲିଗଲା । ଧାଇଁ ସେହ୍ନପର ଡାକିଆଣିଲା, ରଜା ଜାଣିଲେ ବିଭାଘର ହେଲା । ଚତୁର୍ଥୀ ଦିନ କଳାବ୍ରଜନ ବାଘରଜା ଝିଅକୁ ସେହ୍ନପର ଖାଣ୍ଡ କଥା ପଚାରିଲା । ଏ କହିଲା ଆମ ରାଇଜରେ ପଡ଼ିନାହିଁ ଅପାରଇଜରେ ପଡ଼ିଥିବ । କଳାବ୍ରଜନ ପଚାରିଲା, ଅପାରର କୋଉଠି, ଏଠିକି କେତେ ବାଟ ହେବ ? ବାଘରଜାଝିଅ

ଉତ୍ତରେ ଅପାରର ବାହ୍ଲାରଜା ଦେଶରେ, ଏଠିକି ଯାଏ ବାଟ ହେବ । ତହୁଁ ଅରବିନ୍ଦ କଳାଗଞ୍ଜନ ଘୋଡ଼ାରେ ଚଢ଼ି ବାହ୍ଲାରଜାଦେଶକୁ ଗଲା । ସେଠାରେ ସେହିପରି ବାହ୍ଲାରଜାଙ୍କୁ ଥିଲୁ ବର ମିଳୁ ନ ଥାଏ ବୋଲି ସେ ସେହିପରି କଳା, ଧଳା, ହଳଦିଆ ଘୋଡ଼ାର କାଟି ବସିଛି; କଳାଗଞ୍ଜନ ତାର ତୁଣ୍ଡରୁ ଶୁଣିଗଲା । ତାକୁ ସେଠାରେ ସେହିପରି ଅଟକାଇଲେ, ବାହ୍ଲାରଜାଙ୍କୁ ଥିଲୁ ଯାଙ୍କୁ ଭେଟି କରି ଦେଲେ । ଚତୁର୍ଥୀ ଦିନ ଏ ସେହିପରି କହିଲା, ସୁନାକାଣ୍ଡ ଏଠି ପଡ଼ିନାହିଁ; ଅପାରରେ ଯମରଜାଦେଶରେ ପଡ଼ିଥିବ । କଳାଗଞ୍ଜନ ତହୁଁ ଅରବିନ୍ଦ ଯମରଜା ଦେଶକୁ ଗଲା, ଯମରଜା ହିଁ ଥିଲୁ ସେହିପରି ଭେଟି ହେଲା; ଯମରଜାଙ୍କୁ ଥିଲୁ କାଳଚକ୍ର ପଢ଼ା, ତାକୁ ଡଙ୍ଗପୁରର କଥା ଜଣା । ଏ ଯୋଜନରୁ ପଚାରିଲା ସୁନାକାଣ୍ଡ ପଡ଼େ ଏ ଦେଶରେ ପଡ଼ିଛି କି ? ସେ କହିଲା ଆମ ରାଇଜରେ ପଡ଼ିନାହିଁ, ବୁଢ଼ୀଅସୁରୁଣୀ ରାଇଜରେ ପଡ଼ିଛି, ତା ଯାନଙ୍କୁ ଥିଲୁ ପହରର ରହିଛି । ତେବେ ସେମନ୍ତ ଆଣିବାକୁ ଯିବ, ଏଇଯା କରିବ, ଅସୁରୁଣୀ ଛୁଇଁ ଥିଲୁ ଆଉ ବୁଢ଼ୀଅସୁରୁଣୀ ଖର ପୁଅଙ୍କୁ ଥିବେ, ତେବେ ଯିବ ମେଘନାଦ ପାଚେରିକି ଡେଇଁ ପଡ଼ିବ, ସବୁ ସିନ୍ଦୁକକୁ ଥିଲୁ ବାଧାଏ ପକାଇବ; କହିବ ତୋର କଣ ମନେ ନାହିଁକି, ତୁ ହୋଇଥିଲୁ ଛ ମାସର ମୁଁ ହୋଇଥିଲି ବରଷକର, ତୋର ମୋର ବାହାଘର ହୋଇଥିଲା, ତୁ ଏବେ ମତେ ଚିହ୍ନି ପାରୁନାହୁଁ ? ଏହା କହିବ, ତାକୁ କାନ ଧରି ଘରକୁ ନିଜେ ନେଇଯିବ । ଏପରି କଲାକ୍ଷଣି ଆଉ ସମସ୍ତେ ବାହାଘରଯିବେ ବୋଲି ଶାଶୁ ମାନନା କରି, ତମକୁ ସେ ଘରକୁ ଡାକି ନେଇଯିବ, କଥାବାର୍ତ୍ତା ହେବ, ତେବେ ତାକୁ କଥାରେ ସବୁ ପଚାରି ନେବ । କଳାଗଞ୍ଜନ ସବୁ ଶୁଣିଲା, ତହୁଁ ଅରବିନ୍ଦ ଘୋଡ଼ାରେ ବସି ଅସୁରୁଣୀ ରାଇଜକୁ ଗଲା, ଯମରଜାଙ୍କୁ ଥିଲୁ ଯେମନ୍ତ କହିଥିଲା ସବୁ ସେମନ୍ତ କଲା । ବୁଢ଼ୀଅସୁରୁଣୀ ଆଉ ତାର ବଡ଼ଝିଅମାନେ କୁଆଡ଼େ ଗୁଳିଗଲେ କୋଉଁ

* ଝିଲ୍ଲିକାହାଣୀ ।

ମାଗନ୍ତା ଲେଖା କରି, ଏ ଦୁହେଁଯାକ ରହିଲେ, କଥାବାର୍ତ୍ତା ହେଲେ । କଳାରଜନ କହିଲା ତମ ଦେଶରେ ପଟେ ସୁନାକାଣ୍ଡ ଅଛିତ କି ? ଏ କହିଲା ହିଁ ପଡ଼ିଥିଲା । ମୁଁ ପାଇ ରଖିଛି, ଏହା କହିଲା, ଯୋଉ ଘରେ ତାଙ୍କୁ ରଖିଥିଲା ସେ ଘର ଫିଟାଇ ଆଣିବାକୁ ଗଲା । କଳାରଜନ ତା ସାଙ୍ଗେ ସାଙ୍ଗେ ଯାଇଥାଏ, ଦେଖିଲା ସେ ଘରେ ଗୋଟାଏ ଭାଡ଼ି ଉପରେ ଅଠଟି ଲାଉ ଥୁଆ ହୋଇଛି । ଏ ପଚାରିଲା ଏ ଲାଉ-ଗୁଡ଼ାକ କାହିଁକି ଅଛି ? ଅସୁରୁଣୀଟିଏ କହିଲା, ଏଥିରେ ସବୁ ଆମ୍ଭ-ମାନଙ୍କର ଜୀବନ ଅଛି; ଏ ବଡ଼ଟିରେ ମୋ ମାଉ, ସେଠାରୁ ଯୋଉଟି ସାନ ସେଇଟି ମୋ ବଡ଼ ଭଉଣୀର, ସେ କେତେଦିନ ହେଲା କୁଆଡ଼େ ଯାଇଛି ଆସିବାକୁ ନାହିଁ, ସବା ସାନଟି ମୋର, ଅଉଗୁଡ଼ିକ ମୋ ଭଉଣୀଙ୍କର, ଏହିପରି ସବୁ ଦେଖାଇ ଦେଲା । କଳାରଜନ କଣ କଲା ଆଗକଥା ସେ ସାନ ଲାଉଟି ନେଇ ଆସି ଚିରି ଦେଲା ସେ ସାନ ଅସୁରୁଣୀଟି ମରିଗଲା । ସାନ ଅସୁରୁଣୀଟି ମରିଗଲା ଯୋଉଠୁ, ଆଉ ଛଅଟି ଲାଉ ବାଡ଼େଇଦେଲା, ବଡ଼ ଭଉଣୀର ଲାଉଟି ଆଣିଲା, ସୁନାନଳ ସୁନାକାଣ୍ଡ ନେଇଲା, ଆସି ଯମରଜା ଦେଶରେ ପହଞ୍ଚିଲା, କହିଲା ଆମକୁ ବିଦା କରିଦିଅ । ଯମରଜାଙ୍କ ଝିଅ ଶିଖାଇଥାଏ ତେମେ ବାପାଙ୍କୁ କିଛି ମାଗିବ ନାହିଁ, ଗଲାବେଳକୁ କହିବ ମତେ ସେ ଶ୍ରେଷ୍ଠୀ ଯମଟିକି ଦିଅ । ଯମରଜା ଝିଅ ଜୋଇଁକୁ ବିଦା କଲେ, ଯିବା ବେଳକୁ କଳାରଜନ କହିଲା ମତେ ଆପଣଙ୍କ ଶ୍ରେଷ୍ଠୀ ଯମଟିକି ଦିଅନ୍ତୁ, ଯମରଜା କହିଲେ ଝିଅ ନ କହିଥିଲେ କି ଜୋଇଁ ମାଗନ୍ତା ? ହଉ ଦିଅ, ଏହା କହିଲେ ଶ୍ରେଷ୍ଠୀ ଯମଟିକି ଦେଇ ବିଦା କରି ଦେଲେ । ସେଠାରୁ ଆସି ଯମରଜାଝିଅକୁ ବାଟରେ ରଖାଇ, କଳାରଜନ ବାଘରଜା ଘରକୁ ଗଲା, କହିଲା ମତେ ବିଦା କରିଦିଅ ମୁଁ ଯିବି, ବାଟରେ ମଣିଷ ବସିଛନ୍ତି । ବାଘ-ରଜାଙ୍କ ଝିଅ ସେହିପରି କହିଥାଏ ତେମେ ଗଲାବେଳକୁ ବାପାଙ୍କୁ ଶ୍ରେଷ୍ଠୀ

ବାର୍‌ହାଟ୍ଟିକ ମାଗିବ । ବାର୍‌ହାରଜା ସବୁ ଦେଲା, ବିଦାକଲାବେଳକୁ କଳାସଜନ କହିଲା ଆପଣଙ୍କ ଶ୍ରେଷ୍ଠୀ ବାର୍‌ହାଟ୍ଟିକ ମତେ ଦିଅନ୍ତୁ । ଶ୍ରେଷ୍ଠୀ ବାର୍‌ହାଟ୍ଟିକ ଦେଲେ, ବିଦା କରିଦେଲେ । ଆସିଲେ ସମସ୍ତେ ବାଟରେ ଠାଏ ରହିଲେ, ଏ ବାଘରଜା ଘରକୁ ଆସିଲା । ସେଠାରୁ ବିଦା ହୋଇ ଆସିଲା, ଆସିଲାବେଳକୁ ଶ୍ରେଷ୍ଠୀ ବାଘଟିକୁ ଯୌତୁକରେ ଆଣିଲା । ସେଠାରୁ ପାଗ୍ରରଜ ଘରେ ପହଞ୍ଚିଲା, ପାଗ୍ରରଜା ବି ସେହି ପରି ବିଦା କଲା । ପାଗ୍ରରଜାଠାରୁ ବି ସେହିପରି ଶ୍ରେଷ୍ଠୀ ପାଗଟିକୁ ଯୌତୁକ ଆଣିଲା । ସମସ୍ତେ ଏକାଠି ଠୁଳ ହେଲେ, ଆସିଲେ । ଆସିକରି ଘରପାଖରେ ପହଞ୍ଚିଲେ ଯେଉଁଠୁ ବଜ୍ରରାଣୀକି ସମସ୍ତେ କହିଲେ, ତମ ପୁଅ ଶୁର କନ୍ୟା ବିଭା ହୋଇ ଆସୁଛି । ଏ କହିଲା ମୁଁ କେଉଁଠୁ ଆଉ ପୁଅ ପାଇବି, ପୁଅ ତ ବରଷେ ହେଲା କୁଆଡ଼େ ଗଲାଣି, ମୁଁ କେଉଁଠି ପୁଅବୋହୂ ଦେଖିବି । ଏହା କହୁ କହୁ ପୁଅ-ବୋହୂ ଆସି ଦାଣ୍ଡଦୁଆରେ ପହଞ୍ଚିଲେ । ଯେତେ କହିଲେ ଆଉ ସତ କରୁ ନ ଥାଏ, ଦାଣ୍ଡକୁ ଯାଉ ନ ଥାଏ । ବୋହୂମାନଙ୍କ ପୁଅରୁ ଯାଇଁ ଦାଣ୍ଡଦୁଆରେ ଥୁଆହେଲା, ବଜ୍ରରାଣୀ ଗଲା ଭିତରୁ ଆଣିକରି ପୁଅ ବୋହୂଙ୍କୁ ଘରକୁ ନେଇ ଆସି ବନ୍ଦାପନା କଲା । ବୋହୂମାନେ ଘରେ ରହିଲେ, କଳାସଜନ ଗଲା କାଣ୍ଡ ଦେବାକୁ, ଅସୁରୁଣୀର ଦଣ୍ଡବତ କଲା । ଅସୁରୁଣୀ କହିଲା, 'ସଜେଞ୍ଜ ଫୁଟି ସକାଳେ ଯା ଜହ୍ନିଫୁଲ ପରି ଆଉଷ ପା' କହିପରି କଲ୍ୟାଣ କଲା । ହେଲେ ହ ହନ ଗଲା, ଅସୁ-ରୁଣୀର ମନ କେମନ୍ତ କଳାସଜନକୁ ମାରିବ; କହିଲା ବେଣ୍ଟପୋଖରୀ ଉପରେ ଜମି ମାଣେ ହଳଚଷିବ ଖଣ୍ଡିରେ ସୋରିଷ ବୋଲିଏ ବୁଣା ହେବ, ତାକୁ ଯେତେବ ସବୁ ବୋଟେଇ କାଲି ସକାଳୁ ଥୋଇ-ଥିବୁ ତ ତୋ ମୁଣ୍ଡ ରହିବ, ନଇଲେ ତୋ ମୁଣ୍ଡ କଟାହେବ । କଳାସ-ଜନ ଆସିଲା ଘରକୁ, ମୁହଁ ଶୁଖେଇଦେଇ ବସିଥାଏ । ସେଦିନ ପାଗ୍ର-ରଜାଙ୍କ ଝିଅର ପାଳି ହୋଇଥାଏ । ପାଗ୍ରରଜା ଝିଅ ଗନ୍ଧ ପାଇଲା, ଭିତ

ବାହିଲା, କଳାରଜକକୁ ଡାକିବାକୁ ଗଲା, ଦେଖେ ଯେ କଳାରଜକ ମୁହଁ ଶୁଖେଇ ଦେଇ ବସିଛି । ପାଟରାଜାହିଅ କହିଲା, ତମେ ସବୁଦି ପାନ୍‌ଖାଇ ହସ ହସ ହୁଅ, ମୋ ପାଖରେ କାହିଁକି ମୁହଁ ଶୁଖେଇ-ଦେଇ ବସିଥାଅ ? ଏ କହିଲା ହସିବି କଣ, ଜଣକ ଲାଗିଛି ମୁହ ଜଣ ବଧବା ହେବେ । ପାଟରଜାହିଅ କହିଲା ଏହା କାହିଁକି କହିଲ ? କଳାରଜକ କହିଲା ଦେଖ ଆମ ଅରଂମାଙ୍କର ହୁକୁମ ହୋଇଚି ବେଣ୍ଟପୋଖରୀ ଉପରେ ଷୋଳଷ ଢୋଲିଏ ବନ୍ଧି ଦେଇ ଅସିବେ, ଆଜ ରାତ୍ରୁ କୋଡ଼ିଠି ମୁଁ ଗଢ଼ ଗଢ଼ ଢୋଲକରି କାଲ ସକାଳକୁ ଥୋଇଥିବି, ନଇଲେ ମୋ ମୁଣ୍ଡକାଟ ହେବ । ପାଟରଜାହିଅ କହିଲା ହେହୋ ! ଏଇ ଗୁରୁକଥା ପାଇଁ ସେମିନ୍ତ କାହିଁକି ହେଉଚ ? ସେ କଥା ବୁଝାଯାଏ ସିନା, ତେମେ ଆସ ଖାଇବାକୁ ଯିବା । କଳାରଜକ ଖାଇବାକୁ ଗଲା, ସମସ୍ତେ ଖାଇ ପିଇ ସାରିଲେ, ପାଟରଜାହିଅ ଶ୍ରେଷ୍ଠୀପାଟକୁ ଡାକି କହିଲା ତୁ ଅଇଚୁକା ଯା ବାପାଙ୍କୁ, କହିବୁ ତମ ଜୋଇଁକୁ ବିପତ୍ତି ପଡ଼ିଚି ତମର ଯେତେକ ପାଟ ଅଛନ୍ତି ସମସ୍ତଙ୍କୁ ପଠାଇଦିଅ । ଶ୍ରେଷ୍ଠୀପାଟ ଗଲା ପାଟରଜାଙ୍କୁ କହିଲା । ସେ ତାଙ୍କ ରାଜ୍ୟରେ ଯେତେ ପାଟ ଥିଲେ ସବୁ ପଠାଇ ଦେଲେ । ପାଟରଜାହିଅ କହିଲା ଯାଅ ବେଣ୍ଟପୋଖରୀ ଉପରେ ଷୋଳଷ ବୁଣାହୋଇଚି ତାକୁ ଏହି ଗଡ ମଧରେ ଖୁଣ୍ଟିକରି ଢୋଲିକିଆରେ ଥୁଇ ରଖି ଦେଇଯିବ । ପାଟଯାକ ଗଡ ନ ପାହୁଣୁ ସେହିପରି କରିଦେଇ ପାଟରଜାହିଅଠାରୁ ବିଦା ହୋଇ ଗଲେ । ସକାଳୁ ଅସୁରୁଣୀ ଉଠିଲାକ୍ଷଣି କଳାରଜକ ଷୋଳଷ ଢୋଲକିଆ ଜମା କରିଦେଲା । ଅସୁରୁଣୀ ମନେ ମନେ ବିଚାରିଲା ଏଥିରେତ ଏହାକୁ ମାରି ପାରିଲି ନାହିଁ, କଣ କରିବି ? ଅଉ ଏକ ବୁଦ୍ଧି ପାଞ୍ଚିଲା, କହିଲା ମୋର ବାଘଦୁଧ ଦରକାର, କାଲି ସକାଳକୁ ଏଠାରେ ଯେମନ୍ତ ଭାବେ ବାଘଦୁଧ ଆଣି ଥୋଇଥିବୁତ ଆସ୍ମୁ, ନଇଲେ ତୋର ମୁଣ୍ଡ

ରହିବ ନାହିଁ । କଳାରାଜନ ଯେ ଦିନ ସେହିପରି ମୁହଁ ଶୁଖେଇ ଦେଇ ଘରେ ବସିଥାଏ । ସେ ଦିନ ବାଘରଜାଝିଅର ପାଳି । ସେ ପଚାରିଲା ଏମନ୍ତ କରୁଛ କାହିଁକି ? ଏ ଅସୁରୁଣୀ ଯାହା ସବୁ କହିଥିଲା, ସବୁ କହିଗଲା । ବାଘରଜାଝିଅ କହିଲା ଏଥିପାଇଁ ଏତେ ଭାବନା କାହିଁକି ? ତମେ ନିଶ୍ଚିନ୍ତ ହୋଇ ବସ, ମୁଁ ସବୁ କରିଦେବି ସିନା । ସମସ୍ତେ ଖାଇପିଇ ସାରିଲାରୁ ବାଘରଜାଝିଅ ଶ୍ରେଷ୍ଠୀ ବାଘକୁ ପଠାଇ ବାପଘରଗାଁରୁ ଦଶଭାର ବାଘଦୁଧ ଅଣାଇ ଅସୁରୁଣୀ ଦୁଆରେ ରଖାଇଦେଲା । ଅସୁରୁଣୀ ତହିଁ ଆରଦିନ ଉଠିଲା ବେଳକୁ ଦୁଆରେ ବାଘଦୁଧ ଥୁଆ ହୋଇଛି । ଅସୁରୁଣୀ ଦେଖିଲା, ସେହିପରି ମନେ ମନେ ହେଲା, ଏଥିରେତ ମାରି ପାରିଲି ନାହିଁ, କଣ କରିବି ? କଳାରାଜନକୁ କହିଲା କାଲି ସକାଳୁ ଦାଣ୍ଡଦୁଆରେ ଗୋଟିଏ ପୋଖରୀ ଖୋଳା ହୋଇଥିବ, ତହିଁରେ ଦୀପଦଣ୍ଡି ବସିଥିବ, ଚାରିପାଖ ପଥର ପାହାଚବନ୍ଧା ହୋଇଥିବ, ରାଜହଂସ ଖେଳୁଥିବେ । ଏମନ୍ତ ଯେବେ ହୋଇଥିବ ତ ତୁ ଜୀବନରେ ଥିବୁ, ନଇଲେ ତୋ ମୁଣ୍ଡକାଟ ହେବ । ଏକଥା ବାଘରଜାଝିଅ ଶୁଣିଲା, ଶ୍ରେଷ୍ଠୀ ବାଘକୁ ପଠାଇ ବାଘରଜା ଦେଶରେ ଯେତେ ବାଘ ଥିଲେ, ସମସ୍ତଙ୍କୁ ଅଣାଇଲା । ସେମାନେ ରାତି ରାତି ପୋଖରୀ ଖୋଳି, ଦୀପଦଣ୍ଡି ବସାଇ, ପାହାଚ ବାନ୍ଧିଦେଇ ଚାଲିଗଲେ । ଅସୁରୁଣୀ ଉଠିଲାବେଳକୁ ପୋଖରୀ ଖୋଳା ହୋଇଛି, ଦେଖିଲା କଣ କହିବ ଚୁପ ହୋଇ ରହିଲା । ସେଦିନ କଳାରାଜନକୁ କହିଲା, ମୋର ଯେବେ ତୁ ଏକଥା ନ କରି ପାରିବୁ ତୋର ମୁଣ୍ଡ ରହିବ ନାହିଁ । ତୁ କାଲି ସକାଳୁ ମୋର ସପ୍ତପୁରୁଷଙ୍କୁ ଆଣି ମୋ ଦୁଆରେ ଛିଡ଼ା କରିଥିବୁ, ମୁଁ ତାଙ୍କ ସଙ୍ଗେ କଥାବାର୍ତ୍ତା ହେବି । କଳାରାଜନ ଏକଥା ଯମରଜାଝିଅକୁ କହିଲା । ଯମରଜାଝିଅ କହିଲା ଏହି ଛାର କଥାପାଇଁ ଏତେ ଭାବନା କାହିଁକି ? ବାପାଙ୍କ ପାଖକୁ ଖବର ଦେଲେ ତ ସେ ପୁରର ସମସ୍ତଙ୍କୁ

ପଠାଇ ଦେଇ ପାରନ୍ତି, ସପ୍ତପୁରୁଷ କଣ । ଯମରଜାଙ୍କ ଠିଅ ଶ୍ରେଷ୍ଠ ଯମକୁ ଡକାଇ ପଠାଇଦେଲା, କହିଲା ବାପାଙ୍କୁ କହିବୁ ତମ ଠିଅ ଜୋଇଁକୁ ସପତ୍ତି ପଢ଼ାଉ ତମର ଯୋଉ ଯମ୍ପୋଥି ଷଣ୍ଡ ଅଛୁ ତାକୁ ଦଅ । ଶ୍ରେଷ୍ଠୀ ଯମ ଯାଇ ଯମରଜାଙ୍କଠାରୁ ପାଞ୍ଜି ନେଇ ଆସିଲା । କଳାରାଜନ ଏହି ଯମଗଣ ପୋଥିକ ନେଇ ଅସୁରୁଣୀ ଘର ଦୁଆର ମୁହଁରେ ପିଟାଇ ଲମ୍ବେଇ କର ରଖିଦେଇ ବସି ରହିଲା । ଅସୁରୁଣୀ ଉଠି ଦେଖେ ଯେ ତାର ସପ୍ତପୁରୁଷ ଦୁଆରେ ରୁଣ୍ଡ ହୋଇଅଛନ୍ତି । ଦେଖେ ଯେ ତାର ମା ଭଉଣୀଯାକ ସବୁ ମର ତାଙ୍କ ପାଟେଁ ଅଛନ୍ତି । ସେମାନଙ୍କୁ ପଚାରିଲା ତେମେ ସବୁ କେମନ୍ତ ମଲ ? ଏମାନେ କଳା-ରାଜନ ଯାହା ଯାହା କରଥିଲା ସବୁ କହିଲେ । କଳାରାଜନ ସେଉଠୁ କଣକଲା ପୋଥିଷଣ୍ଡି ନେଇ ଆସିଲା, ଅସୁରୁଣୀର ଜୀବନ ଲଉଡ଼ିକ ନେଇ ତାକୁ ଦେଖାଇ ଦେଲା । ଅସୁରୁଣୀ କହିଲା ମୋ ଲଉଡ଼ି ଦେ, ଏ କହିଲା ମୋ ଛକ ପଙ୍ଗାତକୁ ଦେ, ଗୁର ଘୋଡ଼ାକୁ ଦେ, ମୁଁ ଲଉଡ଼ି ଦେବ । ଅସୁରୁଣୀ କଣ କଲା ତାକୁ କର ପକାଇଲା ଯେ ଛକପଙ୍ଗାତ ବାହାର ପଡ଼ିଲେ, ଘୋଡ଼ା ଗୁରଟା ବାହାର ପଡ଼ିଲେ । କଳାରାଜନ ରାଜାଙ୍କୁ କହିଲା, ବାପା ! ଏହାକୁ ରଖିବ କ ମାରବ ? ରଜା କହିଲେ ଏହାକୁ ଆଉ ରଖିନାହିଁ (୧) ମାରଦେ, କଳାରାଜନ ଲଉଡ଼ି ପିଟିଦେଲା ଯେ ଅସୁରୁଣୀର ପ୍ରାଣ ବାହାର ଗଲା । ରଜା ପୁଅ ବୋହୂ ସେଠ ଆନନ୍ଦରେ ଘରଦୁଆର କଲେ, ମୁଁ ଗଲିକୁ କଥା ନ କହିଲେ । ମୋ କଥାଟି ସରିଲା ଇତ୍ୟାଦି ।

—ୀଈ*ଈୀ—

(୧) ଏହାକୁ ରଖିବା ଉଚତ ନୁହେଁ ।

## ବାବାଜୀ କଥା ।

ଗୋଟିଏ ରଜା ଥିଲେ, ତାର ସାତ ଭାରିଯା । ସେ ରଜାର ଅତଳାତଳ ସମ୍ପତ୍ତି, ଭୋଗ କରିବ କିଏ ? ରାଣୀମାନଙ୍କର କାହାରି ପୁଅ ଝିଅ ନ ଥାନ୍ତି । ରଜା ଭାରି ଚିନ୍ତା କରି ବନସ୍ତରେ ତପସ୍ୟା କରିବାକୁ ଗଲେ । ତପସ୍ୟା କରୁଚନ୍ତି, ଦିନେ ଗୋଟିଏ ସାଧୁ ଗୋସାଇଁ ଆସିଲେ, ପଚାରିଲେ କାହିଁକି ଏପରି କଷ୍ଟ ସହି ତପସ୍ୟା କରୁଚ ? ରଜା କହିଲେ ମୋର ସାତ ଭାରିଯା, କାହାରି କିଛି ସନ୍ତାନ ନାହିଁ । ସାଧୁ କହିଲେ ହଉ ଯା ତୋ ଦୁଃଖର କଥା ଶୁଣିଲିଣି, ଯା ଏ ଯୋଉ ଅମ୍ବଗଛ ଦିଶୁଚି, ସେଥିକି ଗୋଟିଏ ଢେଳା ପକାଇବୁ, ସାତଟି ଅମ୍ବ ଝଡ଼ିବ, ନେଇ ଭାରିଯାମାନଙ୍କୁ ଦେବୁ, ବୁଝି ଲୋଭକରି ଆଉ ଢେଳା ପକାଇବୁ ନାହିଁ । ରାଣୀମାନେ ସେ ଅମ୍ବ ଖାଇ ଗର୍ଭ ହେବେ, ସାତଟି ପୁଅ ଜନ୍ମ କରିବେ । ବାବାଜୀ ଏହା କହି ଗଲେ ବାହାରି । ରଜା ଗୋଟିଏ ଢେଳା ପକାଇଲେ ଯେ ସାତଟି ଅମ୍ବ ପଡ଼ିଲା । ସାଧୁଙ୍କ କଥା ନ ମାନି ଲୋଭରେ ଆଉ ଗୋଟିଏ ଢେଳା ପକାଇଲେ, ଆଉ ଅମ୍ବ ପଡ଼ିବ କଣ, ଯୋଉ ସାତଟି ପଡ଼ିଥିଲା ସେ ଗଛରେ ଲାଗିଗଲା । ରଜା କାନ୍ଦି ବୋବେଇ ମୁଣ୍ଡ କଚାଡ଼ି ହେଲେ, ବନସ୍ତଯାକ ସେ ସାଧୁଙ୍କୁ ଖୋଜିଲେ । ଖୋଜି ଖୋଜି ତାଙ୍କୁ ପାଇଲେ, ତାଙ୍କ ଆଗରେ ସବୁକଥା କହିଲେ । ସାଧୁ କହିଲେ ମୁଁ ପରା ମନା କରିଥିଲି, ତୁ କାହିଁକି ଫେର ଢେଳା ପକାଇଲୁ ? ଏହା କହି ସେ ଗଛମୂଳକୁ ଗଲେ, ସାତଟି ଅମ୍ବ ପାରିଲେ, ରଜାକୁ ଦେଲେ, କହିଲେ ତୋର ସାତଟି ପୁଅ ହେବେ, ସବା ବଡ଼ପୁଅଟି ମତେ ଦେବୁ । ରଜା ଅମ୍ବ ନେଇ ଘରକୁ ଆସିଲେ, ରାଣୀମାନଙ୍କୁ ଗୋଟିଏ ୨ ଦେଲେ । ରାଣୀମାନେ ଗର୍ଭ ହେଲେ, ସଖ୍ୟା-

ସମୟରେ ସାତଟି ପୁଅ ଜନ୍ମ କଲେ । ଷଠୀ, ପଞ୍ଚୁଅଟ ଏକୋଇଶା ସବୁ ଗଲା, ପୁଅମାନେ ବଢ଼ିଲେ ଯେମନ୍ତ ଗୋଟିଏ ୨ ପୁନିଅଚନ୍ଦ୍ର । ବଡ଼ ପୁଅଟି ସମସ୍ତଙ୍କଠାରୁ ସୁନ୍ଦର ହୋଇଥାଏ । ପିଲାମାନେ ବଡ଼ ବଡ଼ ହୋଇ ଗଲେ. ପାଠ ପଢ଼ିଲେ, ଘୋଡ଼ାଚଢ଼ି ଶିଖିଲେ, ଖଣ୍ଡାମାର ଶିଖିଲେ; ରାଣୀମାନଙ୍କ ଗୋଡ଼ ଆଉ ତଳେ ପଡ଼ୁ ନ ଥାଏ । ହେଲେ ସେ ସାଧୁ ଗୋସେଇଁ ଆସିଲେ ପୁଅ ନବାପାଇଁ । ରଜା କଣ କଲେ ବଡ଼ପୁଅକୁ ଲୋଭ କରି ଦେଲେ ନାହିଁ, ସବା ସାନପୁଅଟିକି ଦେଲେ । ତାକୁ ନେଇ ଯାଉଚନ୍ତି, ବାବାଜୀ ପଚାରିଲେ, ତୁମ୍ ଝୋଡ଼୍ ସଁଓ ବା ଜଙ୍ଗଲ୍ ସାଁଓ, ଏ କହିଲା ହାମ୍ ରଜାକା ବେଟା ରଜଦାଣ୍ଡ ମେ ସାଁଓ । ବାବାଜୀ ସେଇଠୁ ଜାଣି ପାରିଲେ, ଏ ବଡ଼ପୁଅ ନୁହେ, ରଜା ମତେ ଠକ ଦେଇଚି ବୋଲି କହି ତାକୁ ନେଲେ, ରଜାଙ୍କୁ ଫେରାଇ ଦେଲେ, କହିଲେ ଏତ ମୋର ନୁହେଁ ମୁଁ କାହିଁକି ନେବି ? ରଜା ସାନପୁଅକୁ ରଖିଲେ, ତା ଉପର ପୁଅକୁ ଦେଲେ । ସେ ବି ସେହି-ପରି ବାବାଜୀଙ୍କି ବାଟରେ କହିଲା । ବାବାଜୀ ତାକୁ ବି ଫେରାଇ ଦେଲେ । ବଡ଼ପୁଅକୁ ଛାଡ଼ି ଆଉ ଚାରିପୁଅଙ୍କୁ ରଜା ସେହିପରି ଦେଲେ, ବାବାଜୀ ତାଙ୍କୁ ବି ଫେରାଇ ଦେଲେ । ସବା ଶେଷକୁ ରଜା ବଡ଼ପୁଅକୁ ଦେଲେ । ବାବାଜୀ ତାକୁ ପଚାରିଲା, ବେଟା ! ଝୋଡ଼୍ ସାଁଓ କି ଜଙ୍ଗଲ ସାଁଓ ? ଏ କହିଲା ବାବାଜୀକା ବେଟା, ବାବାଜୀ ଯାହା ଧାଁଓ ହାମ୍ ତାହାଁ ଯାଉଁ । ବାବାଜୀ ଯାକୁ ନେଲେ ଘରେ ରଖିଲେ, ଅପଣାର ଘରଦୁଆର ଦେଖାଇଲେ, ଖାଲି ଗୋଟିଏ ଘର ଦେଖାଇଲେ ନାହିଁ । ଏ ବାବାଜୀ ନୁହେ ଗୋଟାଏ ପିଲାଖିଆ ଅସୁର; ସାଧୁଗୋସେଇଁ ରୂପ ଧରି ଏତେ ନବରଙ୍ଗ କରୁଥିଲା ? ହେଲେ ବାବାଜୀ ଯାକୁ ଘରେ ରଖି କୁଆଡ଼େ ଗଲା । ଏ ଯୋଉ ଘର ବାବାଜୀ ଦେଖାଇ ନ ଥିଲା, ସେ ଘର ଫିଟାଇ ଦେଖେ ଯେ ସେ ଘରେ ଗୁଡ଼ାଏ ପିଲାଙ୍କ ମୁଣ୍ଡ ଟଙ୍ଗା ହୋଇଚି । ଏ ମୁଣ୍ଡ ସବୁ ଯାଙ୍କୁ ଦେଖି ଡରିଲେ ।

ଏ ପଚାରିଲା କାହିଁକି ହସିଲ ? ଏମାନେ କହିଲେ, ତୁ ତ ଏହିକ୍ଷଣି ଆମ ପାଖକୁ ଆସିବୁ । ବାବାଜୀ ଯାଇଛି ତେଲ ଆଣିବାକୁ, ତେଲ ଆଣିଲେ ତତେ କହିବ ଅଣ୍ଟିଆ ଖୋଲ, ଚୁଲ୍ଲୀ ଲଗା, ଠୁକଣା ବସା । ତୁ ଯଦି ଗୋଟିଏ ବୁଦ୍ଧି କରିବୁ ତେବେ ସେ ତତେ ମାରି ପାରିବ ନାହିଁ । ଯେତେବେଳେ ସେ କହିବ ଅଣ୍ଟିଆ ଖୋଲ, ତୁ କହିବୁ ମତେ ଆସେ ନା ତୁମେ ଆଗ ଖୋଲି ମତେ ଶିଖାଇଦିଅ । ଏହିପରି ଯେତେ କଥା କହିବ, ତୁ କହିବୁ ମତେ ଶିଖାଇଦିଅ ମୁଁ କରିବି । ସାଧୁ ଅଣ୍ଟିଆ ଖୋଲି, ଚୁଲ୍ଲୀ ଲଗାଇ, ଠୁକଣା ବସାଇ, ତହିଁରେ ତେଲ ଅଜାଡ଼ି ତେଲ ଯେତେବେଳେ କଡ଼' ହୋଇ ଫୁଟିବ, ତତେ କହିବ ତେଲରୁ ପାଣି ମଲାଣି କି ନା ଦେଖିଲୁ, ତୁ କହିବୁ ତୁମେ ଆଗେ ଦେଖ । ସେ ଯେତେବେଳେ ନଇଁପଡ଼ି ତେଲ ଠୁକୁଣାକୁ ଅନାଇବ, ତୁ ତା ମୁଣ୍ଡକୁ ତେଲ ଠୁକ୍ଣାରେ କରି ମାଡ଼ିଦେବୁ ଯେ ସେ ମରିଯିବ, ସେ ଯାହା ଆଉ ତେଲ ଠୁକ୍ଣାରେ ତୋ ମୁଣ୍ଡ ମାଡ଼ି ଦେଇ ମାରିପକାନ୍ତା, ତା ଆଉ କରି ପାରିବ ନାହିଁ । ଏ ଏହା ଶୁଣି, ସେ ଘର ବନ୍ଦ କରି ଦେଇ ଆସି ବସିଥାଏ । ବାବାଜୀ ତେଲ ନେଇ ଆସିଲା, ମୁଣ୍ଡମାନେ ଯେମନ୍ତ' କହିଥିଲେ ସେହିପରି କଲା । ରଜାପୁଅ ଶେଷକୁ ବାବାଜୀର ମୁଣ୍ଡକୁ ଫୁଟନ୍ତା ତେଲରେ ମାଡ଼ିଦେଲା ଯେ ସେ ମରିଗଲା । ରଜାପୁଅ ମନେ ବିଚାରିଲା ଏ ମୁଣ୍ଡମାନଙ୍କ ଯୋଗୁଁ ସିନା ମୁଁ ଉଦ୍ଧାର ପାଇଲି ମୁଁ ଏମାନଙ୍କୁ କିପରି ଉଦ୍ଧାର କରିବି, ସେଇଠି ବସି କାନ୍ଦିଲା । ଅସି ଗଡ଼ ଅଧ ହେଲାଣି, ଈଶ୍ୱର ପାର୍ବତୀ ଆକାଶରେ ଉଡ଼ି ଯାଉଥାନ୍ତି । ପାର୍ବତୀ କହିଲେ ରହିବଟି, ଆଜି କାହିଁକି ପୃଥିବୀଟା ଭାରି ଲାଗୁଛି ? ଈଶ୍ୱର କହିଲେ ଚାଲ ହୋ ଆମର ଦେଶରେ କଅଁଣ ଅଛି । ପାର୍ବତୀ କହିଲେ ଆମରତ କିଛି ନାହିଁ, ଆମେ ସୃଷ୍ଟି ଦିଅଇଚୁଁ କାହିଁକି ? ଈଶ୍ୱର ପାର୍ବତୀ ଗଲେ ସେ ରଜାପୁଅ ପାଖକୁ, ତାଙ୍କୁ ସବୁ ପଚାରିଲେ । ରଜାପୁଅ ସବୁ କହିଗଲା, ଯେପରି ଜନ୍ମହେଲା, ଏଯାକେ ଯେପରି ଆସିଲା

ମନ୍ତ୍ରମାନେ ଯାହା କହୁଥିଲେ, ସବୁ ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ କହିଗଲା । ଈଶ୍ୱରପାର୍ବତୀ ଶୁଣିଲେ, କହିଲେ ହଉ ତେଣିକି ମୁହଁ ବୁଲା । ଏ ତେଣିକି ମୁହଁ ବୁଲାଇଲା, ଈଶ୍ୱରପାର୍ବତୀ ଫୁଲପାଣି କରି ଛିନ୍ନମୁଣ୍ଡ ଛୁଆଁଇଦେଲେ ଯେ, ସବୁ ହାଡ଼ ଚମ ଏକାଠି ଲାଗିଗଲା, ଆଉ ଛିନ୍ନମୁଣ୍ଡ ଛୁଆଁଇଦେଲେ ଯେ ସମସ୍ତେ ଜୀଇ ଉଠିଲେ । ଈଶ୍ୱରପାର୍ବତୀ ଉଭେଇ ଗଲେ । ଏମାନେ ଯେ ଯାହା ଘରକୁ ଗଲେ, ରଜାପୁଅ ତା ଘରକୁ ଗଲା, ସୁବଚନ ଦେଲା, ସୁଖରେ ଯୁବରାଜ କଲା । ମୁଁ ଗଲାକୁ କଥା କହିଲି ନାହିଁ, ମୋ କଥାଟି ସରିଲା ଇତ୍ୟାଦି ।

## ଚମାରୁଣୀଟିଅ କଥା ।

ଗୋଟିଏ ଦେଶରେ ରଜାଝିଅ, ମନ୍ତ୍ରିଝିଅ, ସାଧବଝିଅ, କୋଟୁଆଳଝିଅ ଚଉଠ ସଙ୍ଗାତ । ଏମାନେ ଏକାଠି ବଗିଚାରେ ଯାଇ ଖେଳନ୍ତି । ଦିନ-କର ମଣ୍ଡାପିଠା ହୋଇଥିଲା, ଚାରି ସଙ୍ଗାତ ବଗିଚା ଭିତରେ ଖାଇବାକୁ ପିଠା ନେଇକରି ଗଲେ । ଖାଉଚନ୍ତି ମନ୍ତ୍ରିଝିଅ କହିଲା ହେ, ମଣ୍ଡାଗଛ ଲଗାନ୍ତୁ ନାହିଁ, ଆଉ ସମସ୍ତେ କହିଲେ ହଉ । ଗୋଟିଏ ମଣ୍ଡାପିଠାଟିଏ ପୋତିଦେଲେ, କହିଲେ କାଲିକି ଯେବେ ଗଛ ହୋଇଥିବ, ନ ହେଲେ ମାମୁଁଘର କଣ୍ଟାରେ ହାଣିବୁ । ଏହିପରି କହୁ କହୁ ପିଠାଟି ଗଜା ଦେଲା, ଗଛ ହେଲା, ଗଛଟି ବଢ଼ିଲା, ଫୁଲ ଫୁଟିଲା, କଷି ଧଇଲା, ମଣ୍ଡାପିଠା ଫଳିଲା । ଗଛଟି ମଣ୍ଡାପିଠାରେ ଲଦି ହୋଇଗଲା, କି ସୁନ୍ଦର କେନା ଖାଇକରି କର୍ପୂରି ସୁଗନ୍ଧ ପିଠାଟିମାନ ! ଗୋଟିଏ ଖାଇଲେ

ମନରୁ ଗୁଝିବ ନାହିଁ । ଗୃହ ସଙ୍ଗାତ ପ୍ରତିଦିନ ସେ ବନସ୍ତକୁ ଯାନ୍ତି, ମଣ୍ଡାଗଛରେ ଚଢ଼ି ପିଠା ଖାନ୍ତି । ଦିନେ ଗଛରେ ଚଢ଼ି ପିଠା ଖାଉଛନ୍ତି, ଏହି ସମୟରେ ବୁଢ଼ୀଅସୁରୁଣୀ ସେ ବାଟରେ ଯାଉଥିଲା, ମଣ୍ଡାଗଛ ମୂଳରେ ପହଞ୍ଚି କହିଲା ହଇଲୋ ପୁଏ, କଣ ଖାଉଚ, ମତେ ଗୋଟିଏ ଦିଅନ୍ତ । ମଲିପୁଅ ଗଛ ଅଗରେ ଥିଲା, ତା ତଳକୁ କଣ୍ଟୁଆଳ ପୁଅ, ତାତଳକୁ ସାଧବପୁଅ, ମୂଳପାଖକୁ ରଜାପୁଅ ବସିଥିଲା, ମଲିପୁଅ ପଠାଟିଏ ତୋଲି କଣ୍ଟୁଆଳପୁଅ ହାତକୁ, କଣ୍ଟୁଆଳପୁଅ ସାଧବପୁଅ ହାତକୁ, ସାଧବପୁଅ ରଜାପୁଅ ହାତକୁ ବଢ଼ାଇ ଦେଲା । ରଜାପୁଅ ବୁଢ଼ୀଅସୁରୁଣୀ ହାତକୁ ଦଉଚ,ଅସୁରୁଣୀ ତାକୁ ଧରିନେଇ କାନ୍ଧରେ ବସାଇ ଚାଲିଲା । ତିନି ସଙ୍ଗାତଯାକ କାନ୍ଦି ବୋବେଇ ଘରକୁ ଗଲେ, ସବୁକଥା ରଜା ଆଗରେ କହିଲେ । ରଜାଙ୍କର ବହୁତ ଖୋଜା ଖୋଜି ହେଲା, ପୁଅକୁ କୋଉଠି ପାଇଲେ ନାହିଁ । ଏଣେ ଅସୁରୁଣୀ ତାକୁ ନେଇ ନିଜ ଘରେ ପହଞ୍ଚିଲା । ଅନେକ ଗନ ବନସ୍ତ ଭିତରେ ମେଘନାଦ ପାଚେରି ବୁଲିଚି, ତାହା ଭିତରେ ଅସୁରୁଣୀର ଘର । ଅସୁର ଅସୁରୁଣୀ ମନିଷଖିଆ । ଏ ବୁଢ଼ୀଅସୁରୁଣୀ ରଜାପୁଅକୁ ଖାଇଲା ନାହିଁ, ଘରେ ରଖି ଆପଣାର ପୁଅପରି କରଥାଏ, ତାକୁ ସବୁ ଭଲ ଜିନିଷ ଆଣି ଖାଇବାକୁ ଦିଏ । ରଜାପୁଅ ମନ ସେଥିରେ ନ ଥାଏ, ସବୁବେଳେ ଖାଲି କାନ୍ଦୁଥାଏ । କେତେଦିନ ଗଲା, ବୁଢ଼ୀଅସୁରୁଣୀ ରଜାପୁଅକୁ ସବୁଘର ଦେଖାଇଲା, ଅଜ ଯେଉଁ ଘରେ ମନିଷ ଖାଇ ହାଡ଼ ପକାଇଥାଏ,ସେ ଘର ଦେଖାଇଲା ନାହିଁ । ପ୍ରତିଦିନ ଅସୁରୁଣୀ ଚରିବାକୁ ଯାଏ, ସେ ନ ଥିଲା ସମୟରେ ରଜାପୁଅ ସେ ସବୁ ଘର ଦେଖେ, ଭୟରେ କାନ୍ଦେ । ରଜାପୁଅ ଦିନେ ଅସୁରୁଣୀଘରୁ ଖଣ୍ଡିଏ ପୋଥି ପାଇଲା, ତହିଁରେ ରୂପ ପରିବର୍ତ୍ତନ ବିଦ୍ୟା ଥିଲା । ରଜାପୁଅ ତାକୁ ସବୁ ଶିଖିଲା । ଏହିପରି କେତେଦିନ ଅସୁରୁଣୀ ଘରେ ରହିଲା, ବେଶ ବଡ଼ ଟିଏ ହେଲା । ତନୁ ମନ କାହିଁରେ ଲାଗୁ ନ ଥାଏ, ଅସୁରୁଣୀ

ବାହାରକୁ ଗଲା । କିନ୍ତୁ ମନ ତାହିଁରେ ଲାଗୁ ନ ଥାଏ, ପାଟେଣି କଣାରେ ବାହାରକୁ ଅନାଉଥାଏ । ଏବେ ସେ ବନସ୍ତକୁ ଆରଦେଶର ରଜାପୁଅ ପାରିଧିକି ଆସିଥିଲା । ବନସ୍ତ ଭିତରେ ଦିବ୍ୟସୁନ୍ଦର ଘରଟିଏ ଦେଖି ତା ଭିତରକୁ ଗଲା, ଦେଖିଲା ରଜାଝିଅ ବସି କାନ୍ଦୁଛି । ରଜା-ଝିଅ ଯୁବକୁ ଦେଖି କହିଲା ତୁମେ କିଏ ? ଏଠାକୁ କାହିଁକି ଆସିଲ ? ଏ ଅସୁରୁଣୀଘର, ଅସୁରୁଣୀ ଆସି ତୁମକୁ ଦେଖିଲେ ଏହିକ୍ଷଣି ଖାଇଯିବ, ତୁମେ ପଳାଅ । ରଜାପୁଅ ରଜାଝିଅର ପରିଚୟ ପଚାରିଲା, ସେ ଆଦ୍ୟଠାରୁ ପ୍ରାନ୍ତ ପର୍ଯ୍ୟନ୍ତ ସବୁ କହିଗଲା । ରଜାପୁଅ କହିଲା ମୁଁ ତୁମକୁ ଏଠାରୁ ଉଦ୍ଧାର କରିନେବି, ତୁମେ ଆଜି ବୁଢ଼ୀଅସୁରୁଣୀ ଆସିଲାରୁ ତାକୁ ପଚାରିବ, ତା ଜୀବନ କେଉଁଠି ଅଛି । ଏହିପରି କଥାବାର୍ତ୍ତା ହେଉଛନ୍ତି । ଅସୁରୁଣୀ ଆସିଲା । ରଜାପୁଅକୁ ଆଉ ବୁଦ୍ଧି ଦିଶିଲା ନାହିଁ ରଜାଝିଅ ଅସୁରବିଦ୍ୟାବଳରେ ରଜାପୁଅକୁ ମାଛି ଆଉ ଘୋଡ଼ାକୁ ଭଅଁର କରିଦେଲା, ସେମାନେ ଓଳି ଉପରେ ବସି ରହିଲେ ଅସୁରୁଣୀ ଆସି କହିଲା କେଉଁଠି ନରଦେହ ବାସୁଛି, ଘରର ଏକଣ ସେକଣ ଖୋଜିଲା । ରଜାଝିଅ କହିଲା ଏଠାକୁ ଆଉ ମଣିଷ କୋଉଠୁ ଆସିବ ? ମତେ ଯଦି ଇଚ୍ଛା ହେଉଛି ଖାଅ । ଅସୁରୁଣୀ ଏଥିରେ ଭୁଲିଗଲା, ଖାଇଲା ପିଇଲା ବସିଲା, ରଜାଝିଅକୁ କହିଲା ଝିଅଲୋ ! ମୁଣ୍ଡରୁ ଗୋଟାଏ ଉକୁଣି ଦେଖିଦେ । ରଜାଝିଅ ମୁଣ୍ଡ ଦେଖିଲା, ଗୋଡ଼ରୁ କଣ୍ଟା କାଢ଼ିଦେଲା, ଯତ୍ନ ସବୁ କରୁଛି ବୁଢ଼ୀକୁ ପଚାରିଲା ହଇଲୋ ମା, ତୁ ମରିଗଲେ ମୁଁ କେଉଁଠି ରହିବି ? ବୁଢ଼ୀ କହିଲା, ଅସୁରୁଣୀ କେବେ ସହଜରେ ମରନ୍ତି, ମତେ ଫେର୍ କିଏ ମାରିବ ? ଆରଦେଶ ରଜାର କେଣ୍ଟାପୋଖରୀ ଅଛି, ତହିଁରେ ସାତତାଳ ପାଣି ସାତତାଳ ପଙ୍କ, ତା ଭିତରେ ଗୋଟିଏ ଫରୁଆ ଅଛି, ଫରୁଆ ଭିତରେ ଗୋଟିଏ ଭଅଁର, ସେ ଭଅଁରର ବେକ ଯଦି କେହି ମୋଡ଼ିଦେବ ତେବେ ମୁଁ ମରିବି । ଏହା କିଏ ଜାଣେ ଯେ କିଏ କରିବ ? ରଜାପୁଅ ମାଛି

ହୋଇ ଓଷଦ୍‌ଉପରେ ଏସବୁ ଶୁଣୁଥାଏ , ଅସୁରୁଣୀ ଫେର୍ ଚଢ଼ିବାକୁ ଗଲା, ରଜାପୁଅ ନଜରୁପ ହୋଇ ଅପଣା ଦେଶକୁ ଗଲା । ମୂଳଅ ଛଡାଇ ବେଣ୍ଟପୋଖରୀର ପାଣି ବୁହାଇଲା, ପଙ୍କ କଢ଼ାଇଲା, ଫଡୁଅଟିକ ବାହାର କର ତାହାଁ ଭିତରୁ ଭଅଁରଟିକ କାଢ଼ି ବେକ ମୋଡ଼ି ଦେଲା । ଏଣେ ଅସୁରୁଣୀ ଘୋରଗର୍ଜ୍ଜନ କର ମରଗଲା । ରଜାପୁଅ ବନସ୍ତକୁ ଯାଇ ରଜାଝିଅକୁ ଘୋଡ଼ାରେ ବସାଇ ଅପଣା ଦେଶକୁ ଘେନ ଅସିଲା । ଗାଁ ଖଣ୍ଡେ ଦୂର ଅଛି, ରଜାଝିଅକୁ ଗୋଟିଏ ତସ୍ଠଗଛମୂଳେ ବସାଇ କହିଲା ତମେ ଏଇଠି ବସିଥାଅ, ମୁଁ ଗାଁଠାରୁ ସଇନ ସାମନ୍ତ ପାଲିଙ୍କି ସୁଅର ପଲଟଣ ଅଣି ତମକୁ ଏଇଠୁ ବାଭିହୋଇ ଘରକୁ ନେଇଯିବ । ଏହାକହି ରଜାପୁଅ ଘରକୁ ଗଲା । ରଜାଝିଅ ଯେଉଁ ତସ୍ଠ ଗଛମୂଳେ ବସିଥିଲା ତାହା ଅଗରେ ଗୋଟିଏ କୂଅ; ସେ ନିକଟରେ ଗୋଟିଏ ଚମାର ଘର । ଚମାରଝିଅକୁ ମା କୂଅରୁ ପାଣି ଅଣିବାକୁ ପଠାଇଲା । ସେ କୂଅରେ ମାଟିଅ ପକାଇ ଭାଙ୍ଗିଦିଏ ଘରକୁ ଫେରଯାଏ, ଏହିପରି ଶଏ କି ଦୁଇଶ ମାଠିଅ ଭାଙ୍ଗିଲା । ଶେଷରେ ମା ଖପା ହୋଇ ଗୋଟାଏ ତମର ମାଟିଅ ଦେଲା । ଚମାରଝିଅ ତମମାଠିଅ କୂଅମୂଳକୁ ଅଣି ସେଇଠି ବସି କାନ୍ଦିଲା । ଏହା ଦେଖି ରଜାଝିଅକୁ ହସ ମାଡ଼ିଲା । ଚମାରଝିଅକୁ କହିଲା ମାଟିର ମାଠିଅ ଭାଙ୍ଗୁ ବୋଲି କି ତମର ମାଠିଅ ଭାଙ୍ଗିବୁ ? ଚମାରଝିଅ ରଜାଝିଅ ପାଖକୁ ଅସି ତାକୁ ତାହାର ପରିଚୟ ପଚାରିଲା । ରଜାଝିଅ ସବୁ କଥା କହିଲେ । ଏହିପରି କଥାବାର୍ତ୍ତା ହେଉ ହେଉ ଚମାରଝିଅ ରଜାଝିଅକୁ କହିଲା, ମତେ ଟିକିଏ ତମ ଝୁଣ୍ଟିଅ ଦିଅନ୍ତୁ, ଲଗାନ୍ତି କେମନ୍ତ ଦିଶନ୍ତି । ଝୁଣ୍ଟିଅ ନେଇ ଲଗାଉ ଲଗାଉ ରଜାଝିଅଠାରୁ ସବୁ ଅଲଙ୍କାର ନେଇ ଲଗାଇଲା । ରଜାଝିଅ ଓଳି କିଛି ବୁଝିପାରିଲା ନାହିଁ, ଶେଷରେ ରଜାଝିଅକୁ କହିଲା ତେମେ ମୋର ପିନ୍ଧିଲାଖଣ୍ଡି, କଂସାମୁଦି ପିନ୍ଧନ୍ତୁ କିପରି ଦିଶନ୍ତି ଦେଖନ୍ତୁ ।

ରଜାଝିଅ ସେହିପରି କଲା, ଚମାରଝିଅର ଲୁଗାପିନ୍ଧିଲା । ଏହିପରି ବେଶ ବଦଳେଇଲାରୁ ଚମାରଝିଅ ରଜାଝିଅକୁ କୂଅପାଖକୁ ଡାକି ନେଇ ତାକୁ କୂଅକୁ ଠେଲିଦେଲା । ରଜାଝିଅ କୂଅରେ ପଡ଼ି ଗୋଟିଏ ପଦ୍ମଫୁଲ ରୂପରେ ରହିଲା । ଚମାରଝିଅ ରଜାଝିଅର ବେଶ ପିନ୍ଧି ଚଗ୍ରଠ ଗଛମୂଳେ ବସି ରହିଲା । ଏଣେ ରଜାପୁଅ ସଇନସାମନ୍ତ ଅଣି ଦେଖେ ଯେ ରଜାଝିଅର ରୂପ କିପରି ଅସୁନ୍ଦର ହୋଇଯାଇଛି କେତେ ଭାବିଦେଲା କିଛି ବୁଝିପାରିଲା ନାହିଁ; କାହାକୁ କିଛି ନ କହି ବାହା ହେଲା । ଚମାରଝିଅ ସେ ଦେଶର ରାଣୀ ହେଲା । ଏହିପରି କେତେଦିନ ଗଲା, ଏହି ମଧ୍ୟରେ ବୁଢ଼ାରଜା ମରିଗଲେ, ସେ ରଜାପୁଅ ରଜା ହେଲା । ଦିନେ ରଜା ବୁଲିବାକୁ ଯାଉଥିଲେ, ସେହି କୂଅପାଖରେ ପହଞ୍ଚିଲେ, ଅତି ସୁନ୍ଦର ପଦ୍ମଫୁଲଟିଏ ଦେଖି ତୋଳି ନେଇ ରାଣୀଙ୍କି ଦେଲେ । ରାଣୀ ବୁଝିଲେ ଯେ ଯେଉଁ କୂଅରେ ରଜାଝିଅଙ୍କୁ ପକାଇ ଦେଇଥିଲେ, ସେହି କୂଅରେ ଏ ପଦ୍ମଫୁଲ ଫୁଟିଥିଲା । ରଜାଝିଅ ଏ ପଦ୍ମଫୁଲ ହୋଇ ଫୁଟିଛି ଏହା ଜାଣିପାରି ସେ ଫୁଲଟିକି ଚିକି ଚିକି କରି ଛିଣ୍ଡାଇ ନଳାମୁହଁକୁ ପକାଇଦେଲେ । କିଛିଦିନ ପରେ ରଜାଝିଅ ନଳାମୁହଁରେ ଲାଉଗଛଟିଏ ହୋଇ ଜନ୍ମିଲା । କଢ଼ି ମାଡ଼ିଲା, ଫଳ ଯେ ଫଳିଲା ଅଗୋଚର (୧) ରଜା ଦିନେ ଗୋଟିଏ ଲାଉ ଭୁଜଣ କରିବାକୁ କହିଲେ । ରାଣୀ ଲାଉ ଭୁଜଣ ବସାଇଥିଲେ, ଲାଉ ଘଡ଼ା ବାହାନାରେ ଶବ୍ଦ କଲା, 'ଘଡ଼ ଘଡ଼ ଲାଉ, ଚମାରୁଣୀ ହାତରେ କି ରଜାପୁଅ ଖାଉ ? ଏହିପରି ତିନିଚାରିଥର ହେଲା । ଚମାରଝିଅ ଶାଶୁକୁ ଡାକି କହିଲା ଦେଖ ଲାଉ କଣ କହୁଛି । 'ଘଡ଼ ଘଡ଼ ଲାଉ ରଜାପୁଅ ମୁଣ୍ଡ ନୁଆଁଣି ଖାଉ ।' ଶାଶୁ ଏହା ଶୁଣି ଲାଉକୁ ବାହ-ଅଢ଼େ ଫୋପାଡ଼ି ଦେବାକୁ କହିଲେ, ରାଣୀ ଫୋପାଡ଼ିଦେଇ ନିଷ୍ଟିନ୍ତ

---

( ୧ ) ଅସଙ୍ଖ୍ୟ ।

ହେଲେ । ରଜାପୁଅ ଖାଇଲାବେଳେ ଲାଉ ମାଗିବାରୁ ରାଣୀମା କହିଲେ, ଲାଉ ଏପରି ଅମଙ୍ଗଳ କଥା କହିବାରୁ ଫୋପାଡ଼ିଦେଲୁଁ । ଏହିପରି କେତେଦିନ ଗଲା, ସେ ଘରର ଲାଉ ଆଉ କେହି ଖାଆନ୍ତି-ନାହିଁ । ଦିନେ ରଜା ବାଡ଼ିଆଡ଼େ ବୁଲୁଁ୨ ଦେଖିଲେ ଯେ, ଗୋଟିଏ ଉତ୍ତମ ସୁନ୍ଦର ଲୁଭଗଛ ହୋଇଛି, ତହିଁରେ ଗୋଟିଏ ଲୁଭଫଳ ପାଚିଛି । ରଜାଙ୍କର ଲୁଭଟି ଖାଇବାକୁ ଲୋଭ ହେଲା, ତୋଳି ଆଣି ଘରେ ଥୋଇଦେଇ ଗାଧୋଇ ଆସିଲେ । ଖାଇବା ସମୟରେ ଛୁରି ଲଗାଇ ଲୁଭଟି ଯେପରି କାଟିଦେଇଛନ୍ତି, ସେହିପରି ଲୁଭଭିତରୁ ସେ ରଜାଝିଅ ବାହାରିପଡ଼ିଲା !! ରଜା ଆଚମ୍ବିତ ହୋଇଗଲେ, ପଚାରିଲେ ତେମେ କିଏ ? ରଜାଝିଅ ଆପଣାର ପରିଚୟ ଦେଇ ଆଉ ଚମାରଝିଅ ଯାହା୨ କରିଥିଲା ସବୁ କହିଲା । ରଜାଝିଅକୁ ଗୋଟିଏ ଘରେ ଲୁଚାଇ କରି ରଖି ରଜା ରାଣୀମାଙ୍କ ପାଖକୁ ଯାଇ କହିଲେ, ବୋଉ ! ଆଜ ଗୋଟିଏ ସେ ଲାଉକୁ ଭୁଜଣ କର । ନୂଆରାଣୀ ଏଥିପାଇଁ ମଙ୍ଗୁନ ଥାଏ, ରଜା ଏକ୍‌ଜିଦ କରିବାରୁ ଭୁଜଣ ରାନ୍ଧିବାକୁ ଗଲା । ରଜା ରାଣୀମାଙ୍କ ସଙ୍ଗହତରେ ସେଠାରେ ବସିରହିଲେ, ଲାଉ କଣ କହିବ ଶୁଣିବାକୁ । ଲାଉ ଘଡ଼୨ ହୋଇଆସିଲା, ଅଗପଛ ଶବ୍ଦ କଲା, 'ଘଡ଼୨ ଲାଉ, ଚମାରୁଣୀ ହାତେ କି ରଜାପୁଅ ଖାଉ, ରାଣୀ ଭୟରେ ଥରୁ-ଥାଏ ରଜା କିଛି ନ କହି ଗୁଣ୍ଟିଗଲେ, ଦାଣ୍ଡଦୁଆରେ ଗୋଟାଏ ଟୋପର ଖୋଳାଇ, ରାଣୀଙ୍କି ଡକାଇଲେ, ତହିଁରେ ଧାନ କେତେ ସମାଇବ ଅନ୍ଦାଜ କରିବାକୁ । ରାଣୀ ବଡ଼ ମନକଷ୍ଟରେ ଟୋପର-ପାଖକୁ ଗଲେ, ପଛହିଁ ଲକ୍ଷଣେ ରଜା ଭିତରକୁ ଠେଲି ଦେଲେ, କହିଲେ 'ଯା ଚମମାଟିଆରେ ପାଣି କାଢ଼ୁଥା' । ତଳକଣ୍ଟା ଉପର କଣ୍ଟା ଛିଣ୍ଡେଦେଲେ ମାଟି ଚଢ଼ାଇଦେଲେ ସେ ରଜାଝିଅକୁ ବାହା ହୋଇ ସୁଖରେ ଘର ଦୁଆର କଲେ, ମୁଁ ଗଲାକୁ କଥା ନ କହିଲେ, ମୋ କଥାଟି ସରିଲା ଇତ୍ୟାଦି ।

## ସାଧବବୋହୂ ଲୀଳାବତୀର କଥା ।

ଗୋଟିଏ ସାଧବଥିଏ, ତାହାର ସାତପୁଅ, ସାତବୋହୂ, ସବା
ସାନ ବୋହୂଟିର ନାମ ଲୀଳାବତୀ । ସେକାଳର ଗୋଟିଏ ଯୋଗୀ ଭିକ
ମାଗି ଆସିଥିଲା, ତାର କେମନ୍ତ ଲୀଳାବତୀ ଉପରେ ନଜର ପଡ଼ିଲା ।
ସେ ସାଧବଦୁଆରେ ଭିକପାଇଁ ଡ଼ାକୁଥାଏ, ସେ ଯେତେ ଭିକ
ଯାଚିଲେ ତାହାର ହାତରୁ ନେଲା ନାହିଁ; କହିଲା ଯଦି ତମ ଘରର
ସାନବୋହୂ ଭିକ ଦେବ ତ ନେବି, ନହେଲେ ବେକରେ ଛୁରୀମାରି
ମରିବି । ତାହାଙ୍କୁ ଫେରାଇ ଦେବାର ନୁହେଁ, ସମସ୍ତେ କହିଲେ
ସାନବୋହୂ ଝୁଡ଼ିକ ବାଟରେ ହାତ ଗଳାଇ ଭିକ ଦେଉ । ଏ ଯୋଗୀ
ପଦମନ୍ତ୍ର ଜାଣେ, ଭିକନେଲାବେଳେ ଲୀଳାବତୀକି କଣ ପଦ କରିଦେଲା
ଯେ, ଲୀଳାବତୀ ଯୋଗୀ ସାଙ୍ଗରେ କୁକ୍କୁର ହୋଇ ଗୋଡାଇଲା ।
ଘରେ ପହଞ୍ଚି ଯୋଗୀ ଲୀଳାବତୀକୁ ମଣିଷ କରି ତାକୁ ଘରେ ରଖିଲା,
ଏଣେ ଲୀଳାବତୀର ବର ଆଉ ଦେଢ଼ଶୁରମାନେ ତାକୁ ଫେରାଇ
ଆଣିବାକୁ କେତେ ଉପାୟ କଲେ । ପହିଲେ ବଡ଼ଦେଢ଼ଶୁର
ଯୋଗୀ ପାଖକୁ ଗଲା । ଯୋଗୀ ପଦୁଅ ବୋଲି ଯୋଗୀ ଘରକୁ ଗଲା
ନାହିଁ, ସେ ଗାଁରେ ଗୋଟିଏ ମାଲୁଣୀଘରେ ରହିଲା । ସେ ଗାଁରେ
ଯେ ଲୋକେ, ସମସ୍ତଙ୍କୁ ଯୋଗୀ ମନ୍ତ୍ର ଜୋରରେ କାହାକୁ ପଶୁ,
କାହାକୁ ପକ୍ଷୀ କରିଦେଇଥାଏ, ଖାଲି ଯେ ମାଲୁଣୀକି, ଲୀଳାବତୀ ପାଇଁ
ଫୁଲ ଗୁନ୍ଥି ଦେବ ବୋଲି ରଖିଥାଏ । ସାଧବପୁଅ ମାଲୁଣୀଘରେ ଥିଲା,
ଯୋଗୀ ଫୁଲ ନେବାକୁ ଆସିଲା, ମନ୍ତ୍ରବଳରେ ଜାଣିଲା ଯେ ସାଧବ-
ପୁଅ ସେଠି ଅଛି । ତାକୁ ମାଲୁଣୀଘରୁ ବାହାର କରିନେଇ

ଦାଣ୍ଡରେ ଘୋଡ଼ାଏ ନଡ଼ିଆ ଗଛ କରିଦେଲା, ତା ଘୋଡ଼ାକୁ ତାଳଗଛ କରିଦେଲା । ଏହାପରେ ଅଉ ଛ ଭାଇ ଯାକ ଲୀଳାବତୀକି ଆଣିବାକୁ ଗଲେ, ସମସ୍ତେ ସେଇଆଡ଼େ ନଡ଼ିଆଗଛ ହୋଇ ରହିଲେ । ଅଉ କିଏ ଅଛି ଯେ କିଏ ଯିବ, ସମସ୍ତେ ଗୁନଗାନ ହୋଇ ରହିଲେ । ବଡ ଭାଇ ଭାରିଯାର ଗର୍ଭ ହୋଇଥାଏ, ତାର ଗୋଟିଏ ପୁଅ ହେଲା । ପୁଅଟିକୁ ଗୁର ଛ ବର୍ଷ ହେଲାରୁ ତାକୁ ଅବଧାନ ପାଖରେ ପାଠ ପଢ଼ାଇଲେ । ପୁଅଟିର ନା ଦେଇଥାନ୍ତି ବଣିକେସନ । ବଣିକେସନ ଚାଟଶାଳରେ ପଢ଼ୁଛି, ଦିନେ ତାହାର ଖଡ଼ୀ ଗଡ଼ିଗଲା । ସେ ମାଗି-ବାରୁ, ଅଉ ପିଲାମାନେ ତାକୁ କହିଲେ, 'ଅଣବାପୁଅ ରେ ପଣ ଯାଉଚି ନା ଖଡ଼ୀ ଗଡ଼ିଗଲା ଦେ ବୋଲୁଚି' । ବଣିକେଶନ ତାର ବାପ କିଏ ଜାଣେ ନା, କି ଅନ୍ୟ ପିଲାମାନେ କେହି ଜାଣନ୍ତି ନାହିଁ । ଏଇଥି ଲାଗି ପିଲାମାନେ ତାକୁ ଏପରି କହିଲେ । ବଣିକେସନ ସେଦିନ ଚାଟଶାଳରୁ ଆସି ବଲେଇ ଗୁହ ଖଣ୍ଡି' ମୁଣ୍ଡାମାଣ୍ଡି କଣି' ଏହାପରେ ଗୋଡ଼ାଏ ଘରେ ଶୋଇଲା । କେତେଠାଇଁ କେତେ ଖୋଜିଲେ, କୋଉଠି ତାକୁ ପାଇଲେ ନାହିଁ । ତାର ମା କାନ୍ଦୁଣି ଖାନ୍ଦୁଣି ହୋଇ ତାକୁ ଖୋଜୁଥାଏ, 'ବଲେଇ ହୋଇଲୁ ମ୍ୟାଉଁ, ଦୁଧଭାତକର ଗୁଣ୍ଡିଏ ଖାଉଁ ପୁଅକୁ ଦେଖାଇ ଦେଉଁ ।' ବଲେଇକୁ ଦୁଧଭାତ ଖାଇବାକୁ ଦେଲେ, ବଲେଇ ଖାଇସାରି ଯୋଉଘରେ ବଣିକେଶନ ଶୋଇ-ଥିଲା, ସେ ଘର କବାଟରେ ଲାଞ୍ଜୁଡ଼ି ମାରିଦେଲା ଯେ, କବାଟ ଫିଟି-ଗଲା । ମା ବଣିକେସନର ମୁଣ୍ଡ ଉପରେ ବସିଲା, ଖୁଡ଼ୀମାନେ ଗୋଡ଼ ତଳେ ବସିଲେ, ପଚାରିଲେ କାହିଁକି ରୁଷିଚୁ କହ, ହଜିଥିଲେ ଖୋଜିଦେବୁ, ଭାଙ୍ଗିଥିଲେ ଗଢ଼ି ଦେବୁ, କାହିଁକି ରୁଷିଚୁ କହ । ପୁଅ କହିଲା, ମୋ ବାପ ଦାଦିମାନେ କାହାନ୍ତି କହ । ମା କହିଲା ତୁ ସେଥିରୁ କି ପାଇବୁ ? ବାପ ଦାଦି ତ ସାତ ଖୁଡ଼ୀଙ୍କି ଆଣିବାକୁ ଗଲେ, ସେଇଆଡ଼େ ରହିଲେ । ପୁଣି ପୁଅ ଜିଦି କରିବାରୁ ମା ଯୋଗୀର

କଥାଯାକ ତାଙ୍କୁ କହିଲା । ସବୁ କଥା ଶୁଣି ପୁଅ କହିଲା, ମୁଁ ଯିବ, ବାପ ଦେବରକାଙ୍କୁ ମୁକ୍ତ କର ଆଣିବ । ସମସ୍ତେ ମନା କରୁଥାନ୍ତି, ସେ ଏକା ଯିବକର ବାହାରିଲା । ଘୋଡ଼ାଶାଳକୁ ଯାଇ ଦେଖିଲା ଯେ, ଗୋଟିଏ ମଡ଼ିଆ ଘୋଡ଼ାଟିଏ ହସୁଚ, ତାକୁ ଆଣିଲା, ଗ୍ରନ୍ଥ ଅଣିଲା, ମା ଖୁଡ଼ୀ ସମସ୍ତଙ୍କୁ ଦଣ୍ଡବତ କର ଯୋଗୀଗାଁକୁ ଗଲା, ସେ ମାଲୁଣୀ-ଘରେ ପହଞ୍ଚିଲା । ମାଲୁଣୀ ଯାକୁ ସେଠାରେ ରହିବାକୁ ମନା କରୁ-ଥାଏ; ଏ କହିଲା ତୁ ମୋ ଘୋଡ଼ାକୁ ନେଇ ଆଉ କୋଉଠି ବାନ୍ଧ ଅ, ମୁଁ ତୋ ଘରେ ମାଇପି ବେଶ ହୋଇ ରହୁଚ । ଯୋଗୀ ଯଦ ପଚାରବ କହିବୁ ଏ ମୋର ଝିଅଣ୍ଟି, ମୁଁ ତ ବୁଢ଼ୀ ହେଲଣି, ଯଦ ମରଯିବ କିଏ ସାନ୍ତାଣୀଙ୍କ ପାଇଁ ଫୁଲ କିଏ ଗୁନ୍ଥିବ ? ଏଯୋଗୁଁ ଯାକୁ ଆଣି ରଖିଚ । ବଂଶିକେଶନ ଗୁରଏ କଳା ବୋଲା ହେଲା, ଖଡ଼ୁ ଶାଢ଼ୀ ପିନ୍ଧ ଗୋଟିଏ ସ୍ତ୍ରୀରୂପ ଧରଲା, ତା ଘରେ ରହିଲା । ଯୋଗୀ ଆସିଲା, ମାଲୁଣୀଠାରୁ ଫୁଲ ନେଇଗଲା, ବଶିକେଶନକୁ ମାଲୁଣୀର ଝିଅଣ୍ଟି ବୋଲ ବୁଝିଲା । ଏହାପର ଥାଏ, ଦନେ ବଶିକେଶନ ମାଲୁ-ଣୀକୁ କହିଲା ମାଉସି ! ମୁଁ ଖଣ୍ଡିଏ ଫୁଲ ଗୁନ୍ଥନ୍ତି ? ମାଲୁଣୀ କହିଲା କାହିଁରେ ପୁଅ ଅସୁନ୍ଦର ହେଲେ ଯୋଗୀ ଆଉ ମତେ ରଖିବ ନାହିଁ । ଏ କହିଲା ସୁନ୍ଦର ହେଲେ ନେଇଯିବୁ, ଅସୁନ୍ଦର ହେଲେ ଫୋପାଡ଼ି ଦେଇଯିବୁ । ବଶିକେଶନ ଯୋଉ ଫୁଲ ଖଣ୍ଡି ଗୁନ୍ଥିଲା ସେ ବଡ଼ ସୁନ୍ଦର ହେଲା, ମାଲୁଣୀ ତାକୁନେଇ ଲୀଳାବତୀକୁ ଦେଲା । ବଶି-କେଶନ ଯେ ଫୁଲମାଳରେ ଖଣ୍ଡିଏ କେତକୀପାଖୁଡ଼ାରେ ଭାଷା ଲେଖି ଗୁନ୍ଥିଥାଏ । ଲୀଳାବତୀ ଦେଖୁ ଦେଖୁ ସେ ଭାଷାଖଣ୍ଡିକ ଖସିପଡ଼ିଲା, ପଢ଼ି ଦେଖେ ଯେ, ତାର ପୁରୁଷ ବଂଶିକେଶନ ତାକୁ ନେବାକୁ ଆସିଚ । ଯୋଗୀର ଜୀବନ କୋଉଠି ଅଛି କଥାରେ ୨ ତାକୁ ପଚାର କହିବାକୁ ଲେଖିଚ । ମନକଥା ମନରେ ଥାଏ, ଦନେ ଲୀଳାବତୀ ଯୋଗୀ ସଙ୍ଗେ କଥାବାର୍ତ୍ତା କରୁ ୨ ପଚାରିଲା ହେ । ତମେ ଯଦ

ମରିଯିବ, ମତେ କିଏ ପୋଷିବ ? ତେଣୁ ସିନା ମୋତେ ଅନାସ୍ତ କରୁ ଯିବ । ଯୋଗୀ କହିଲା ମୁଁ କିଣ ସହଜରେ ମରିବି ? ଦରିଆ ଭିତରେ ସାତତାଳ ପାଣି, ସାତତାଳ ପଙ୍କ, ପଙ୍କ ଭିତରେ ଗୋଟିଏ ଫଡୁଆ; ତା ଭିତରେ ଗୋଟିଏ ସାନ ଫଡୁଆ, ତା ଭିତରେ ବଗଟି ଅଛି, ତାକୁ ଯଦି କିଏ ଆଣି ବେକ ମୋଡ଼ି ଦେବ ତେବେ ମୋ ପ୍ରାଣ ଯିବ । ଦରିଆ ଭିତରକୁ ଫେରି କିଏ ଯିବ ? ମାଛ, ମଗର, କୁମ୍ଭୀର, ଖାଇଯିବେ । ଯଦି କିଏ ଏ ଗାଁପାଖ ଠାକୁରାଣୀଙ୍କ ଅନୁସରଣ କରି ତାଙ୍କ ହାତରେ ଯେ ବାରହାତ ଖଣ୍ଡା ଅଛି, ତାକୁ ପାଇବ ତେବେ ସେ ଖଣ୍ଡା ହାତରେ ଥିଲେ ମାଛ, ମଗର, କିଛି କରିବେ ନାହିଁ । ଲୀଳାବତୀ ଏସବୁ କଥା ବଣିକେସନ ପାଖକୁ ଲେଖି ପଠାଇଲା । ବଣିକେସନ ସେ ଠାକୁରାଣୀଙ୍କ ପାଖରେ ସାତ ରାତି ସାତ ଦିନ ଗୁହାରି ପଡ଼ିଲା । ଠାକୁରାଣୀ ପ୍ରସନ୍ନ ହୋଇ ତାକୁ ଆପଣା ହାତରୁ ଖଣ୍ଡା ଦେଲେ; କହିଲେ ଏ ଖଣ୍ଡା ସବୁବେଳେ ହାତରେ ରଖିଥିବୁ, ଦରିଆରେ ବୁଡ଼ିଲାବେଳେ ଯଦି ମାଛ, କୁମ୍ଭୀର, ମଗର ଆସିବେ, ତେବେ ଲୁଥ ଭଜା ନେଇଥିବୁ ଯେ, ଲୁଥ ବୁଣିଦେଲେ ସେମାନେ ତାକୁ ଖାଇଲାଗିବେ, ପାଖକୁ ଆସିବେ ନାହିଁ । ଠାକୁରାଣୀଙ୍କଠାରୁ ଏହିପରି ଆଜ୍ଞା ପାଇ ବଣିକେସନ ମାଲୁଣୀ ପାଖକୁ ଗଲା, ତାକୁ ଏସବୁ କଥା କହି ଅଣ୍ଟିରେ ଲୁଥଗୁଡ଼ାଏ ନେଇ ଦରିଆ କୂଳକୁ ଗଲା । ଦରିଆ ମଝିରେ ପଶି ଫଡୁଆଟି ଆଣିଲା, ଠାକୁରାଣୀଙ୍କ ଖଣ୍ଡା ଥାଏ ହାତରେ, କେହି ଜୀବଜନ୍ତୁ କିଛି କଲେ ନାହିଁ । ଫଡୁଆଟି ଆଣି ସେ ମାଲୁଣୀ ଘରକୁ ଫେରି ଆସିଲା, ତା ଘୋଡ଼ା ଉପରେ ଚଢ଼ି ଯୋଗୀ ପୁରକୁ ଗଲା । ଦରିଆ ଭିତରୁ ଫଡୁଆଟି ଆଣିଲାବେଳୁଁ ଯୋଗୀର ଜର ହୋଇଥାଏ, ଯୋଗୀକି ଦାଣ୍ଡକୁ ଡାକିଲା, ତାକୁ ସେ ଫଡୁଆଟି ଦେଖାଇଲା ଯୋଗୀ ଯେତେ ନେହୁରା ନମସ୍ତ ହୋଇ ସେ ଫଡୁଆଟି ମାଗିଲା, ତା ଶୁଣେ କିଏ ? ବଣିକେସନ କହିଲା ଆଗେ ମୋ ବା

ଆଉ ଛ ଦାଦଙ୍କୁ ଦେ, ସେମାନଙ୍କ ଘୋଡ଼ା ଦେ । ଯୋଗୀ ସେମାନଙ୍କୁ ନିଜରୂପ ଦେଲା । ମାଲୁଣୀଘର ବଂଶ, ଧୋବା ଘର ବଂଶ ଆଉ ସେ ଗାଁ ର ଯେତେଲୋକଙ୍କୁ ଯୋଗୀ ଗଛ ବୃକ୍ଷ କରି ବନ୍ଦ କରିଥିଲା, ସେମାନଙ୍କୁ ସମସ୍ତଙ୍କୁ ମନୁଷ କଲା । ଯୋଗୀ ବଣିକେସନଠାରୁ ଫନ୍ଦୁଆଟି ନେବ ବୋଲି ବଡ଼ ବେସ୍ତ ହେଉଥାଏ । ବଣିକେସନ କହିଲା ତୁ ଏଠାରେ ନିଆଁ କର ମୁଁ ଦେବି । ଯୋଗୀ ନିଆଁ ଥବଲାଏ ଲଗାଇଲା ବଣିକେସନ ଫନ୍ଦୁଆଟି ଫିଟାଇ ତା ଭିତରୁ ବଟଟିକୁ ବାହାର କରି ସମସ୍ତଙ୍କ ଆଗରେ ବେକ ମୋଡି ଦେଇ ନିଆଁରେ ପକାଇଦେଲା । ଯୋଗୀ ମୁଠିଣିଏ ଛଟକାଢ଼ି ସେଇକ୍ଷଣ ମରିଗଲା । ବଣିକେସନ ବାପ ଦାଦ ସାତଭାଇ ଆଉ ଲୀଳାବତୀକୁ ନେଇ ଘରକୁ ଆସିଲା । ଆନନ୍ଦରେ ଘର ଦୁଆର କଲା, ମୁଁ ଗଲାକୁ କଥା କହିଲା ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।

## ଅଁଳାକଣ୍ଢେଇ କଥା ।

ଦୋଟି ମୂଲିଆ ମୂଲିଆଣି ଥାନ୍ତି, ମୂଲିଆଟି ରଜାଘରୁ ମୂଲ ଲାଗି ଧାନ ଗଉଣୀଏ ଅଣେ, ତାକୁ ନିତି ଖାଇ ଦିନ କଟାନ୍ତି । ଦିନକର ଅଁଳାକଣ୍ଢେଇ ବିକା ଆସିଥିଲା, ଗାଁ ଭିତରେ ସମସ୍ତେ କିଣିଲେ, ମୂଲିଆଣୀଟି ବି ଦିନକର ମୂଲଧାନ ଗଉଣୀକ ଦେଇ ଗୋଟିଏ କିଣିଲା । ଟଙ୍କା ପୁନା ପାଙ୍ଗରେ ଧାନ ଗଉଣୀକ କୋଉଠି ସର (୧) ? ସବୁକର ମୂଲିଆଣୀଟି ଯୋଉ କଣ୍ଢେଇଟି କିଣିଥିଲା ତା ସବୁଠାରୁ ଅସୁନ୍ଦର ଦିଶୁଥିଲା । କଣ୍ଢେଇଟିକ ଆଣି ମୂଲିଆଣୀ ତା କୁଡ଼ିଆଘରର

(୧) ସମାନ ।

ଗୋଟିଏ ଠଣାରେ ରଖିଦେଇଥାଏ । ତାର ଶେରସ୍ତ କାମ ସାରି ଘରକୁ ଆସି ଦେଖିଲା ଯେ, ଖାଇବା ପିଇବାକୁ କିଛି ନାହିଁ, ମୂଳ ଧାନରେ ଅଁଳାବଣ୍ଣେଇଟିଏ ଜଣା ହୋଇଛି । ଭୋକରେ ପେଟ ଜଳୁଛି, ଭାରିଯାକୁ ନିସ୍ତୁକ ମାଡ଼ ଚଢ଼ାଇଲା, ଉପାସ ଭୋକରେ ଫେର କାମକୁ ଗଲା, କାମରୁ ଆସି ଯାହା ମିଳିଲା ଖାଇ ଶେରସ୍ତ ଭାରିଯା ଦୁହେଁ ରାତିରେ ଶୋଇଲେ । ରାତି ପହରେ ହୋଇଛି ଅଁଳାବଣ୍ଣେଇ ଡାକ ପକାଇଲା, 'ଲୋ କହୁଣୀଖାଇ, ମୁଁ ହଗିଯିବି ଉଠୁ ।' ମୂଳିଅଣୀ ଉଠୁ ନ ଥାଏ, ଅଁଳାବଣ୍ଣେର ଡାକ ଉପରେ ଡାକ ପକାଇବାରୁ, ବିଗୃଖି ହୋଇଲା, କହିଲା ତୁ ପଛକେ ଏ ଘର କଣରେ ହଗ୍, ଆଉ ପାଟି କର ନା, କାଲେ ତା ସେରସ୍ତ ନିଦ ଭାଙ୍ଗିଯିବ, ଏହି ଭୟରେ ଏପରି କହିଲା । ଅଁଳାବଣ୍ଣେଇ ଯେ ଘର କଣରେ ହଗିଲା । ଫେର ଶୋଇଛନ୍ତି, ରାତି ଦୁପହର ହେଲାଣି, ଅଁଳାବଣ୍ଣେଇ ଉଠିଲା, ଫେର ସେହିପରି ଡାକ ପକାଇଲା । ମୂଳିଅଣୀ କହିବା ଅନୁସାରେ ଘର କଣରେ ହଗିଲା । ରାତି ଶେଷ ପହରେ ଯେତେବେଳେ ଅଁଳାବଣ୍ଣେଇ ଉଠି ପୁଣି ସେହିପରି ଡାକିଲା, ମୂଳିଅଣୀ ବିଗୃଖି ଭାରି ବିରକ୍ତ ହୋଇ କହିଲା ମୋ କାନରେ ହଗ । ସବୁକୁ ସବୁ କଣ୍ଣେଇମଣି ଆସି ତା କାନରେ ହଗିଦେଇ ଗଲା । ଏହାପରେ ରାତି ପାହିଲା, ସକାଳୁ ଉଠି ମୂଳିଅଣୀ ଦେଖେ ଯେ ତା କାନରେ ଘୁଅଫୁଅ କିଛି ନାହିଁ, ସୁନା ଗୁଡ଼ାଏ ! ଘର କଣକୁ ଅନାଇ ଦେଏ ଯେ କଣେ ସୁନା ଜମା ହୋଇଛି । ଆନନ୍ଦର ଆଉ ସୀମା ରହିଲା ନାହିଁ । ସ୍ୱାମୀକି ଡାକିଆଣି ସବୁ ଦେଖା-ଇଲା । ଯାହା ଖରଚ କରିବାର କଲେ, ବାକି ମାଠିଆରେ ପୂରାଇ ଗୋଡ଼ ତଳେ ପୋତିରଖିଲେ । ଏହାପରେ ସବୁଦିନେ କରନ୍ତି, ସେ ମୂଳିଅଣୀର ସେ ଗାଁରେ ଗୋଟିଏ ସଙ୍ଗାତ ଥିଲା, ସଙ୍ଗାତ ଦିନେ ତା ଘରକୁ ଆସିଲା, ଦେଖିଲା ସ୍ୱାଙ୍କଘରେ ସମ୍ପତ୍ତି ମାଡ଼ିପାଡ଼ିଚ ପଡ଼ିଲା, ଏତେ ସମ୍ପତ୍ତି କୁଆଡୁ ହେଲା ? ବୁଝିଲା ଯେ ସେଦିନ ସଙ୍ଗାତ ଯେ ଅଁଳାବଣ୍ଣେଇ କଣିଥିଲା

ତାଙ୍କୁ ସମସ୍ତେ ଅସୁନ୍ଦର ବୋଲି କହୁଥିଲେ, ସେ ସୁନା ହସେ । ହ ସଙ୍ଗାତଙ୍କର ଭାରି ମନ ମିଳିଲା, ହ ହନପାଇଁ ସେ ସଙ୍ଗାତଠାରୁ ଅଁଳାକଣ୍ଢେଇକି ମାଗିନେଲା । କଣ୍ଢେଇକି ନେଇ ଘରକୁ ଯାଉଛି, ବାଟରେ ଗୋଟାଏ ବାଇଗଣ କିଆରି ପଡ଼ିଲା । ଅତି ସୁନ୍ଦର କଅଁଳିଆ ବାଇଗଣଟିଏ ଦେଖି ତାକୁ ଛିଣ୍ଡାଇ ନେଇ ଖାଇଲା । ଘରେ ପହଞ୍ଚି ଅଁଳାକଣ୍ଢେଇକି ଉତ୍ତମ ସ୍ଥାନରେ ରଖିଦେଲା । ମନ ଖାଲି ଛଟପଟ ହେଉଥାଏ କେମନ୍ତ ସଞ୍ଜ ହେବ । ସଞ୍ଜ ହେଲା, 'ଝିଟି' ଇଚ୍ଛାବଢ଼ା କରି ଖାଇପିଇ ଶୋଇଲେ । ସଞ୍ଜ ପହରକଠେଇଁ ଅଁଳାକଣ୍ଢେଇ ବାଇଗଣଚୋରଣୀ' ବୋଲି ହୁରି ପକାଇଲା । ଏ ସ୍ତ୍ରୀଲୋକଟିର ଶେରସ୍ତ ଉଠିବସି କାହା ହୋଇ କହିଲା, କାହିଁ ଗୋଟାଏ କଣ ଅଛି, ବାଇଗଣଚୋରଣୀ ବୋଲି ଡକାପାଡ଼ୁଛି, ଏ ରଜାଦେଶ, ରଜା ଶୁଣିଲେ ଏହିକ୍ଷଣି ମୋ ହୁରୁମତ ନେବେ, ଏହା କହି ତା ଭାରିଯାକୁ ଠାକୁ ଛେଚିଲା । ଅଁଳାକଣ୍ଢେଇ ଗୁଣିବାର ଜନ୍ମ ନୁହେଁ, ଡାକୁଥାଏ 'ଲୋ ବାଇଗଣ ଚୋରଣୀ ମୁଁ ହଗିଯିବି ଉଠ' । ଏ ସ୍ତ୍ରୀଲୋକଟି ଉଠି ତାକୁ ଘରର ଏକ କଣରେ ହଗାଇଲା । ସଞ୍ଜ ଦ୍ୱିତୀୟ, ତୃତୀୟ ପହର ବି ସେହିପରି ଘରର ଆଉ ଦୁଇକଣରେ ହଗାଇଲା, ଶେଷ ପହରକୁ ଆପଣା ଲୁଗା କାନିରେ ହଗାଇଲା । ସକାଳୁ ଉଠି ଶେରସ୍ତକୁ ସବୁ ଦେଖାଇଲା । ସୁନାମୁଣ୍ଡା ଦେଖି ଶେରସ୍ତର ଅଖି ଝଲକି ପଡ଼ିଲା । ଭାରିଯାକୁ କେତେ ଗେଲ କରି କଥା କହିଲା; କାଲି ସଞ୍ଜରେ ମାରିଥିବାରୁ ପିଠି ଆଉଁସି ଦେଲା । ଅଁଳାକଣ୍ଢେଇକ ଦ ଦନ ରଖି, ଏମାନେ ସେ ମୂଲ୍ୟଥଣୀକ ଫେରାଇ[redacted]ର ଅସିଲେ । ସେ ଅଁଳାକଣ୍ଢେଇକି ନେଇ ଘରଦୁଆର କଲା, ପକ୍କାକୋଠା କଲା, ଖୁବ ସୁଖରେ ରହିଲା, ମୁଁ ଗଲାକୁ କଥା କହିଲା ନାହିଁ । ମୋ କଥାଟି ସରିଲା ଇତ୍ୟାଦି ।

# ବୁଦ୍ଧିମତୀ ସାଧବଝିଅର କଥା ।

ଗୋଟିଏ ସାଧବଝିଅ ଧୂଳିଘର କରି ଖେଳୁଚି, କହୁଚି କଉଡ଼ି ପାଇଲି । କଉଡ଼ି କଉଡ଼ି ହାତରେ ଧରି ଝାଉଁଥାଏ କହୁଥାଏ, 'କଉଡ଼ାକେ ମରି' କଉଡ଼ାକେ ଚରି, କଉଡ଼ାକେ ଘରଦୁଆର କରି, କଉଡ଼ି କଉଡ଼ିକ ବେଉଜନ୍ତୁ ପରିଚିଲି ସୁନାଖମ୍ବେ ସୁନ କଲଶ ଠେଇ, ରଜାପୁଅ ସେହିବାଟେ ଘୋଡ଼ାଦଉଡ଼ି କରୁଥିଲା, ସାଧବଝିଅର କଥା ଶୁଣି ତାକୁ ପଚାରିଲା, କଉଡ଼ି କଉଡ଼ାକେ କିପରି ଏ କଥ ସବୁ କରିବୁ ? ଏ କହିଲା ବୁଦ୍ଧି ଥିଲେ ସବୁ ହୋଇପାରେ । ରଜାପୁଅ ଏହା ଶୁଣି କିଛି ନ କହି, ଘୋଡ଼ାଦଉଡ଼ ବନ୍ଦ କରି ଘରକୁ ଗଲା, ଗୋଟିଏ ଘର ତହିଁରେ ମୂଷାମାଟି କଣେ ବିଲେଇ ଚୁହ ଖଣେ ସେଇଘରେ ଯାଇ ଶୋଇଲା । ଖାଇଲା ପିଇଲାବେଳକୁ ପୁଅକୁ ଖୋଜାଗଲା, ରାଣି କହିଲେ ଆଜି କାହିଁକି ଏତେବେଳଯାଏ ପୁଅ ଆସି ନାହିଁ ? ସମସ୍ତେ ଗଲେ ଖୋଜିବାକୁ, ଅନ୍ଧରୁ ସନ୍ଧ ଖୋଜିଲେ, କୋଉଠି ପାଇଲେ ନାହିଁ । ବିଲେଇ କହିଲା 'ମେଉଁ ମଉଁ ଦୁଧଭାତ କରି ଗୁଣ୍ଡିଏ ଖାଉ ପୁଅକୁ ଦେଖାଇଦେଉଁ ।' ରାଣୀ କହିଲେ ମରି ନଅଁ ଲଗ ଠା, ସବୁ ଦି[illegible] ଖାଉଚୁ ଆଜି କଣ ନ ଖାଇଲେ ପୁଅକୁ ଦେଖାଇବୁ ନାହିଁ । [illegible]ଇ କହିଲା ସବୁଦିନେ ଖାଏଁ ଥଇଶାଭାତ, ଆଜି ଖାଇବି ହାଣ୍ଡିରୁ ଭାତ । ବିଲେଇକି ହାଣ୍ଡିରୁ ଭାତଗୁଣ୍ଡାଏ ବାଢ଼ିଆଣି ଦୁଧ ଗୋଳେଇ ଖାଇବାକୁ ଦେଲେ । ବିଲେଇ ଖାଇଲା, ଲାଙ୍ଗୁଡ଼କୁ ଛିଡ଼ାକରି ମଉଁ ହୋଇ ଆଗେ ବାହାରିଲା । ଯୋଉଘରେ ରଜାପୁଅ ଶୋଇଚି, ସେ

ଘର କବାଟରେ ଲଙ୍ଗୁଡ଼ ମାରଦେଲା ଯେ, କବାଟ ଫିଟିଗଲା । ରଜା ରାଣୀ ସେ ଘର ଭିତରେ ପଶିଗଲେ, ମା ଗୋଡ଼ତଳେ ବସିଲା, ବାପ ମୁଣ୍ଡପରେ ବସିଲା, କହିଲେ ହଜିଥିଲେ ଖୋଜିଦେବୁ, ଭାଙ୍ଗିଥିଲେ ଗଢ଼ିଦେବୁ, କାହିଁକି ରୁଷିଚୁ କହ । ରଜାପୁଅ କଥା କହୁ ନ ଥାଏ । ମା ବାପ ଲଗେଇ୨ ବେଳେବେଳ ପଚାରୁ ଥିବା କହିଲା ! କହିଲା ତମେ ଦିହେଁ ସତ୍ୟକର, କହିବି କାହିଁକି ରୁଷିଚି । ମା କହିଲା ମାର ପୁଅର କି ସତ୍ୟ ? ବାପ କହିଲା ବାପର ପୁଅର କି ସତ୍ୟ ? ପୁଅ ଏକଜିଦ୍ ଲଗାଇଲା ଯୋଉଠୁ, ମା ବାପ ସତ୍ୟ କଲେ । ପୁଅ କହିଲା ମୁଁ ସାଧବଝିଅକୁ ବିଭା ହେବି । ମା ବାପ କହିଲେ ଆମ ସମାନ ବନ୍ଧୁହେବ, ତୋ ସମାନ କନ୍ୟାହେବ, ତେବେ ଯାଇ ବିଭାଘର, ଏ କଥା ଶୁଣ ଆଉ କଣ କହ । ପୁଅ କହିଲା ମୋର ଆଉ କିଛି କଥା ନାହିଁ, ମୁଁ ସାଧବ-ଝିଅକୁ ବିଭା ନ ହେଲେ ପ୍ରାଣହରାଇଦେବି । ରଜା ନାଚାର ହୋଇ ହଁ ଭରିଲେ । ବନ୍ଧୁମାନଙ୍କ ଘରକୁ ନିମନ୍ତ୍ରଣ ଗଲା, ଗୁମୁଣ୍ଡଅ ବନ୍ଧା ହେଲା, ବେଦୀ ତୋଳା ହେଲା; ମହାସମାରୋହରେ ବିଭାଘର ହେଲା ।

ରଜାପୁଅ ଚଉଠିଦିନ ରାତିରେ ସାଧବଝିଅ ପାଟଚେଣିଆ କାନରେ କଉଡ଼ି କଡ଼ାଏ ବାନ୍ଧିଦେଇ ତାର ଧାଈସାଙ୍ଗରେ ତାକୁ ଏକ ବନ-ସୁଢେ ସୁଅଢ଼ିରେ ନେଇ ଛାଡ଼ି ଆସିଲା । ସାଧବଝିଅକୁ ନିଦଲାଗିଥାଏ କିଛି ଜାଣିପାରିଲା ନାହିଁ । ନିଦଭାଙ୍ଗିଗଲାରୁ ଦେଖେ ଯେ କେହି ନାହାନ୍ତି ଅଗନାଗନ ବନସ୍ତ ଭିତରେ ସେ ଏକା, ଆଉ ତା ଧାଈ ଅଛନ୍ତି, କଉଡ଼ି କଡ଼ାଏ କାନରେ ବନ୍ଧା ହୋଇଛି । ତାର ଦୁଃଖକଥା ଭାବୁ ମନେ ପଡ଼ିଲା, ଧାଈକି କିଛି କହିଲା ନାହିଁ, ସେ ବନସ୍ତରେ [redacted]ଏ କୁଡ଼ିଆ କରି ରହିଲା । କାନରେ ଯେଉଁ କଉଡ଼ି କଡ଼ାକ ଥିଲା ତାକୁ ଧାଈକି ଦେଲା ଲିଆ କିଣି ଆଣିବାକୁ । ଧାଈ ଲିଆ ଆଣିଲାରୁ ତାକୁ କହିଲା ନେ ଯାଇ ବଣ ଭିତରେ ଚୋଟିଏ ପଦା ଯେଗାରେ ବୁଣିଦେ, ମୟୂର ଖାଇବାର ପଛି ଝାଡ଼ିଦେଇ ଯିବେ । ଉହୁଁ ଥରଦିନ ପହିଗୁଡ଼ିକ

ଗୋଟିଏ ଆଣିଲେ, ସାଧବଝିଅ ସେ ପକ୍ଷୀରେ ପଙ୍ଖା ଗୁଣି ଧାଈକି ବିକିବାକୁ ଦେଲା, ଧାଈ ବିକି ଟଙ୍କା ଆଣିଲା । ଏହିପରି ସବୁଦିନ କରି ସେ କୋଡ଼ିଏରେ କୋଡ଼ିଏ ଟଙ୍କା ହେଲା । ସାଧବଝିଅ କହିଲା, ଧାଈ ବେଠିଆ ଡାକି ଆଣ, ଏ ଲଟା କାଟିବେ । ଧାଈ ବେଠିଆ ଡାକି ଆଣିଲା ସେ ସବୁ ଲଟା କାଟିଲେ । କୋଠା ତୋଳିଲେ, ପୋଖରୀ ଖୋଳିଲେ, କୂଅ ବସାଇଲେ । ସାଧବଝିଅ ହେଉଣୁ ବଣିଆ ଡକାଇ ଅଳଙ୍କାର ଗଢ଼ାଇଲା; ରୁପାବାସନ ସାରେ କଲା, ସୁନାବାସନ ସାରେ କଲା, ରୁପାଖାପ, ସୁନାଖାପ, ରୁପା ପିଲସଜ, ସୁନା ପିଲ-ସଜ କଲା । ସବୁ କରିସାରି ଧାଈକି କହିଲା, ଯା କେଞ୍ଚାସାହିରୁ କନ୍ଥା ଅତ୍ରି କେଳୁଣୀ ସଜ ଆଣିବୁ । ଧାଈ କେଳୁଣୀ ସଜ ଆଣିଲା, ସାଧବଝିଅ କେଳୁଣୀସଜ ସବୁ ପିନ୍ଧିଲା, ଗୋଟିଏ ଚକଆ ହାର ବେକରେ ଲଗାଇଲା; ତା ସ୍ୱାମୀଘର ଯୋଉଠି, ଗଲା ସେଇଠିକି ଭିକ-ମାଗିବାକୁ । ସମସ୍ତେ ଭିକ ଦେଲେ; କହିଲେ କେଡ଼େ ସୁନ୍ଦର କେଳୁଣୀଟିଏ ଆସିଚି । ସେ ରଜାପୁଅ ଆଉ ଗୋଟିଏ ବାହାହୋଇଥାଏ ସେ କହିଲା ମୁଁ ଟିକିଏ କେଳୁଣୀକି ଦେଖନ୍ତି ? ନଅରଭିତରୁ ଜଳା-ବାଟେ କେଳୁଣୀକି ଦେଖିଲା । କେଳୁଣୀ ବେକରେ ଯୋଉ ଚକଆ ହାରଟି ଥିଲା ତାକୁ ଦେଖି ନୂଆସଣୀଙ୍କର ବଡ଼ ଲୋଭ ହେଲା; ରଜା-ପୁଅକୁ କହିଲା ମତେ ସେ ହାରଟି କିଣିଦିଅ । ରଜା କେଳୁଣୀକି ସେ ହାରଟିକି କିଣିବାକୁ ମାଗିଲାରୁ ସେ ନାହିଁକଲା, ନୂଆସଣୀ ଏକ ଜିଦ୍ ଲଗାଇଲେ ଯୋଉଠୁଁ, ରଜାପୁଅ କେଳୁଣୀକି କହିଲା, ମତେ [redacted]ାର ପନ୍ଦରଦିନପାଇଁ ଦେଇଥା, ମୁଁ ତତେ ଫେରାଇଦେବି, [redacted]ୀ ନାହିଁ ନାହିଁ କରୁଥିଲା, ରଜାପୁଅ ଯାଉଁ ଭାରି ଜିଗର ଲଗାଇଲା ସାଧବଝିଅ କହିଲା, ହଉ ଭଲଲୋକ ଡାକ, ମୁଁ ଭଲଲୋକଙ୍କ ଆଗରେ ତମକୁ ହାର ଦେବି । ଭଲଲୋକ ଆସିଲେ, ସାଧବଝିଅ କହିଲା, ତେମେମାନେ ସାକ୍ଷୀ ଥାଅ, ଏ ହାର ନଉଚନ୍ତି, ପନ୍ଦର ଦିନରେ

ଫେରାଇଦେବେ, ନ ଦେଲେ ସ୍ଵାଙ୍କୁ ମୁଁ ସାଙ୍ଗରେ ନେଇଯିବ । ସମସ୍ତେ ସାକ୍ଷୀ ରହିଲେ, ସାଧବହୁଁଅ ହାର ଦେଇଗଲା । ସାଧବହୁଁଅ ଗୋଟିଏ ମୂଷା ପୋଷିଥାଏ, ମୂଷାକୁ କହିଲା ହଇରେ ମୂଷାଭୁ ଯାହାର ଲୁଣ ଖାଉ ତାର ଗୁଣ କରୁଛି ? ମୂଷା କହିଲା ତାହାର ଗୁଣ କରିବ ନାହିଁ, ଆଉ କାହାର କରିବ ? ସାଧବହୁଁଅ ମୂଷାକୁ କହିଲା ତୁଏ ଦେଖ ରଜାଘରକୁ ଯିବୁ, ରଜାପୁଅ ଭାରିଯା ଶୋଇଥିବ .ତା ବେକରେ ଯୋଡ଼ ଚକଆ ହାରଅଛି ତାକୁ କାଟି ଘେନ ଆସିବୁ । ମୂଷା ଗଲା ନୂଆରାଣୀଙ୍କ ବେକରୁ ହାରଟି କାଟି ଘେନଆସିଲା,ସାଧବହୁଁଅକୁ ଦେଲା, ସାଧବହୁଁଅ ହାରକୁ ରଖିଲା; ପରଦିନ ଉଠି ରଜାପୁଅ ପାଖକୁ ଗଲା; କହିଲା ମୋ ହାର ଦିଅ । ରଜାପୁଅ ଗଲା, ଭାରିଯାକୁ ହାର ମାଗିଲା, ରାଣୀ ବେକ ଦେଖିଲାବେଳକୁ ହାର ନାହିଁ । ରାଣୀ କାନ୍ଦି ହୋଇ ବସିଲା, ରଜାପୁଅକୁ କହିଲା,ମୋ ହାରଟି କିଏ ନେଇଗଲାଣି । ରଜା ପୁଅ ବଡ଼ ହଇରାଣରେ ପଡ଼ିଲା, ଭୟ ହୋଇ ଘରେ ଲୁଚି ରହିଲା । କେଳୁଣୀ ଡାକି ଥକିଲା, ରଜାପୁଅ ଆଉ ଶୁଣୁ ନଥାଏ । କେଳୁଣୀ ଭଲଲୋକମାନଙ୍କୁ ଡାକଆଣିଲା, ଭଲଲୋକେ ସବୁ ରଜାପୁଅକୁ ଘରୁ ଡାକି ଆଣିଲେ । ସାଧବହୁଁଅ କହିଲା ମୋ ହାର ଦିଅନ୍ତୁ, ନଇଲେ ମୋ ସାଙ୍ଗରେ ଚାଲନ୍ତୁ । ରଜାପୁଅ ହାରର ଦାମ୍ ଯାଚିଲା, କେଳୁଣୀ କେବେ ମାନିଲା ନାହିଁ, ଏକଜିଦ୍ ଲଗାଇଥାଏ ହାର ନ ଦେଲେ ମୋ ସାଙ୍ଗରେ ଚାଲ । ଭଲ ଲୋକ କହିଲେ, କହିଚନ୍ତି ଯେତେବେଳେ ଯିବେ ନାହିଁ କଣ ! ସାଧବହୁଁଅ ରଜାପୁଅକୁ ସାଙ୍ଗରେ ନେଇ କରି ଗଲା, ତା ଘରେ ରଖାଇଲା । କେଳୁଣୀ ବେଶ ଛାଡ଼ି ଭଲ[redacted] ପିନ୍ଧିଲା । ପୂଜାହାରୀକି କହିଲା ଆଜି ଭଲ କରି ରନ୍ଧାବଢ଼ା[redacted] ପୂଜାହାରୀ ଘେରଘେରବାସ କଲା । ସାଧବହୁଁଅ ଯୋଡ଼ଘରେ ବସଉଠ କରେ ସେହିଘରେ ଯୋଗାହେଲା । ରଜାପୁଅକୁ ଡାକି ଆଣିଲେ ଖାଇବାକୁ । ଭାତ ତରକାରି ସବୁ ସୁନାବାସନ ରୁପାବାସନରେ ବଢ଼ା

ହୋଇଥାଏ । ରଜାପୁଅ ଖାଇବସି ଦରଥିଆ ହେଲାଣି ସାଧବଝିଅ କହିଲା,'କଡ଼ା'କେ ମର କଡ଼ାକେ ଭର କଡ଼ାକେ ଘର ଦୁଆର କର; କଡ଼ାଏ କଡ଼ିରେ ବେଉନ୍ତ ପାରଲେ ନୃପତିକୁମରେ ବନ୍ଦୀ ବ କର ।" ରଜାପୁଅ ସବୁ ବୁଝି ପାରିଲା, ଖାଇଲାଠାଉଁ ଉଠି ଯାଇ ସାଧବଝିଅ ହାତକୁ ଧରିପକାଇଲା, କହିଲା ତମେ ସେହି । ମୋ ଦୋଷ କ୍ଷମା କର । ଏହା କହି ସାଧବଝିଅକୁ ଘରକୁ ନେଇଗଲା, ତାକୁ ପାଟରାଣୀ କଲା, ଦ ଭାଇଯାକୁ ଧନ ସୁଖରେ ରହିଲା; ମୁଁ ଗଲାକୁ କଥା ନ କହିଲା । ମୋ କଥା ଟି ସରିଲା, ଫୁଲଗଛଟି ମରିଲା ।

ହଇରେ ଫୁଲଗଛ କାହିଁକ ମରିଲୁ ? ମତେ ଗାଈ ଖାଇଗଲା ।
ହଇରେ ଗାଈ କାହିଁକି ଖାଇଲୁ ? ମତେ ରେଜ଼ ଜଗିଲା ନାହିଁ ।
ହଇରେ ରେଜ଼ କାହିଁକ ଜଗିଲୁ ନାହିଁ ? ମତେ ବଡ଼ବୋହୂ ଭାତ ଦେଲା ନାହିଁ ।
ହଇଲେ ବଡବୋହୂ କାହିଁକ ଭାତ ଦେଲୁ ନାହିଁ ? ମତେ ପୁଅ ଗୁଡଲା ନାହିଁ ।
ହଇରେ ପୁଅ କାହିଁକ ଗୁଡ଼ିଲୁ ନାହିଁ ? ମତେ ଧୂଳିଅଜନ୍ଦା କାମୁଡ଼ିଲା ।
ହଇରେ ଧୂଳିଅଜନ୍ଦା କାହିଁକ କାମୁଡ଼ିଲୁ ? ମୁଁ ତଳେ ୨ ଥାଏଁ କଅଁଳ ମାଉଁସ ପାଇଲେ ଲୁଟ୍ କର ଖାଏଁ ।

ସମ୍ପୂର୍ଣ୍ଣ ।

କଟକ ଦତ୍ତପ୍ରେସରେ ଶ୍ରୀହରମୋହନ ଦତ୍ତଙ୍କ ଦ୍ୱାରା ମେସିନ୍‌ଯନ୍ତ୍ରେ ମୁଦ୍ରିତ ।